

ମହାନ୍ ସ୍ୱାଧୀନତା ସଂଗ୍ରାମୀ

# ଯଦୁମଣି ମଙ୍ଗରାଜ

ମହାନ୍ ସ୍ୱାଧୀନତା ସଂଗ୍ରାମୀ

# ଯଦୁମଣି ମଙ୍ଗରାଜ

ସଂପାଦନା

ଶ୍ରୀମତୀ ସଂଯୁକ୍ତା ଚୌଧୁରୀ

# ମହାନ୍ ସ୍ୱାଧୀନତା ସଂଗ୍ରାମୀ ଯଦୁମଣି ମଙ୍ଗରାଜ

ସଂପାଦନା :
ଶ୍ରୀମତୀ ସଂଯୁକ୍ତା ଚୌଧୁରୀ
ଏମ୍.ସି-୪, ବରଗଡ ବ୍ରିଟ କଲୋନୀ, ଭୁବନେଶ୍ୱର

ପ୍ରଥମ ମୁଦ୍ରଣ : ୧ ଜାନୁୟାରୀ ୨୦୦୩

ମୁଦ୍ରଣ :
କ୍ରିଏସନ୍ ପ୍ରିଣ୍ଟିଂ ଇଣ୍ଡଷ୍ଟ୍ରି, ଭୁବନେଶ୍ୱର -୨
ମୂଲ୍ୟ : ୩୦. ୦୦ (ତିରିଶି ଟଙ୍କା ମାତ୍ର)

# ସୂଚୀପତ୍ର

# ଦେଶପ୍ରେମୀ ଯଦୁମଣି

ସୁରେନ୍ଦ୍ର ନାଥ ଦ୍ୱିବେଦୀ

ଓଡିଶାର ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ଆଲୋଚନା କଲାବେଳେ ଆମେ ସେମାନଙ୍କର ରାଜନୀତିକ ଦୃଷ୍ଟିକୋଣ ଭିତରକୁ ଯିବା ନାହିଁ । ଏଇଟା ଦ୍ୱନ୍ଦ୍ୱାତ୍ମକ ହୋଇପାରେ । ରାଜନୀତିକ ପରିସ୍ଥିତି ଯେପରି ଦ୍ରୁତଭାବରେ ପରିବର୍ତ୍ତନ ହେଉଛି, ସେଥିରେ କୌଣସି ନିର୍ଦ୍ଦିଷ୍ଟ ପଥକୁ ଆଶ୍ରୟ କରି ଚଳିବା ସହଜ ନୁହେଁ । ବ୍ରିଟିଶ ସରକାର ସହିତ ସଂଗ୍ରାମ ଦୀର୍ଘଦିନ ଚାଲିଲା - ଅହିଂସା ଶାନ୍ତିପୂର୍ଣ୍ଣ ସଂଘର୍ଷ ନାନାରୂପ ନେଇଥିଲା । ସେଥି ନିମନ୍ତେ ତେବେ ଶୁଣାଯାଉଥିଲା । ନରମ ପନ୍ଥୀ ଓ ଚରମପନ୍ଥୀ । ଯେପରି ଗୋପାଳକୃଷ୍ଣ ଗୋଖଲେଙ୍କୁ ନରମପନ୍ଥୀ ଓ ବାଳ ଗଙ୍ଗାଧର ତିଳକଙ୍କୁ ଚରମପନ୍ଥୀ ଆଖ୍ୟା ଦିଆଯାଉଥିଲା । ସେଥିରୁ ପୁଣି ଲାଲ ବାଲ ପାଲ - ଲାଲା ଲାଜପତ୍‌ରାୟ ଓ ବିପନ ଚନ୍ଦ୍ର ପାଲଙ୍କୁ ମଧ୍ୟମପନ୍ଥୀ ବୋଲି ଧରାଯାଉଥିଲା । ଏବେ ପୁଣି ଉଗ୍ରବାଦୀ ବୋଲି ସାଧାରଣ ଭାବରେ ଗଣ୍ୟ କରାଯାଉଛି । କମ୍ୟୁନିଷ୍ଟଙ୍କ ଭିତରେ ବିଭାଜନ ଘଟି ସି.ପି.ଆ.ଇକୁ ସ୍ଥିତିବାଦୀ ଓ କମ୍ୟୁନିଷ୍ଟ ମାର୍କିଷ୍ଟଙ୍କୁ ବିପ୍ଲବପନ୍ଥୀ ବୋଲି ବିଚାର କରାଯାଉଛି । ନଣକେ ବାଙ୍କ, ଦେଶକେ ଫାଙ୍କ ପରି ଦେଶର ରାଜନୀତିର ବିଭିନ୍ନ ରୂପ ଆମ ସମ୍ମୁଖରେ ।

ସ୍ୱାଧିନତା ପରେ ଆଉ ପାର୍ଟିମାନଙ୍କର କୌଣସି ନିର୍ଦ୍ଦିଷ୍ଟ ରାଜନୀତିକ ଆଦର୍ଶ ନାହିଁ । କମ୍ୟୁନିଷ୍ଟ ପାର୍ଟିର ମଧ୍ୟ ଚରିତ୍ର ବଦଳିଗଲାଣି ; ବୈପ୍ଲବିକ ଦାନ୍ତଘଷରା ବି ଝଡିଗଲାଣି । ସୋଭିଏତ୍ ଇଉନିୟନ ତାଙ୍କର ଆଦର୍ଶରୂପେ ରହିଥିଲା । ତାହାର ବିଲୋପ ପରେ ସେମାନେ ଚିନ୍ତା ସଙ୍କଟରେ ଘାଣ୍ଟି ହେଉଛନ୍ତି । ଭାରତର କମ୍ୟୁନିଷ୍ଟମାନେ ଅନ୍ୟ ରାଜନୀତିକ ଦଳଗୁଡିକ ପରି କ୍ଷମତା ରାଜନୀତିରେ ଲିପ୍ତ କେରଳ ଓ ପଶ୍ଚିମବଙ୍ଗରେ କମ୍ୟୁନିଷ୍ଟ ସରକାର କମ୍ୟୁନିଷ୍ଟ ବିପ୍ଲବ ପଥକୁ ସୁହାଇଲା ପରି କୌଣସି କାର୍ଯ୍ୟକ୍ରମ ଅନୁସରଣ କରିପାରିନାହିଁ । ସ୍ଥିତାବସ୍ଥାକୁ ଆହୁରି ମଜବୁତ୍ କରି ନିଜର ଆସ୍ଥାନକୁ ଦୃଢ କରିବା ନିମନ୍ତେ ବଦ୍ଧପରିକର । ସ୍ୱାଧୀନତା ପରେ ଯେତେବେଳେ ଏପରି ଆଦର୍ଶଗତ

ଇଙ୍ଗେଇର ଦୂରବସ୍ଥା ସେଥିରେ ସ୍ୱାଧୀନତା ପୂର୍ବର ରାଜନୀତିକୁ କେବଳ ଏକ ଆଦର୍ଶଭିତ୍ତିକ ଦୃଷ୍ଟିରୁ ବିଚାର କରାଯାଇପାରେନା ।

ରଣ କୌଶଳ ବଦଳାଇବାକୁ ପଡୁଥିଲା, ସେହି ହିସାବରେ ଭିନ୍ନ ପନ୍ଥା ଅବଲମ୍ବନ କରିବାକୁ ହେଉଥିଲା । ତେଣୁ ଯେଉଁମାନେ ଦେଶର ସ୍ୱାଧୀନତା ସଂଗ୍ରାମ ଲାଗି ତ୍ୟାଗ କରିଥିଲେ, ପ୍ରାଣବଳି ଦେଇଥିଲେ, ସେମାନଙ୍କୁ ଉଭର ପୁରୁଷ ମାନେ ନିର୍ଦ୍ଦିଷ୍ଟ ଆଦର୍ଶ ବା ରାଜନୀତିକ ଦୃଷ୍ଟିକୋଣରୁ ବିଚାର କଲେ ବାସ୍ତବିକ ମୂଲ୍ୟାଙ୍କନ ହୋଇପାରେନା ।

ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କୁ ଅନ୍ୟମାନଙ୍କ ଅପେକ୍ଷା ଭିନ୍ନ ଦୃଷ୍ଟିକୋଣରୁ ଦେଖିବାକୁ ପଡିବ । ଦେଶପ୍ରେମର ବହ୍ନି ତାଙ୍କ ହୃଦୟରେ ଏପରି ଜଳୁଥିଲା ଯେ ସେ ସାଧାରଣ ଧାରାବାହିକ କାର୍ଯ୍ୟ ପ୍ରତି ଆଗ୍ରହୀ ନ ଥିଲେ । ଗାନ୍ଧିଜୀଙ୍କ ଲୁଣମରା ଆନ୍ଦୋଳନ ଆରମ୍ଭ ହେଲାବେଳେ ସେ କହୁଥିଲେ ଆମକୁ ଏ କାମ ପୋଷାଇବ ନାହିଁ । ମୁଁ ହନୁମାନ ପରି ଚାରିଆଡେ ଡେଇଁ ବିଦ୍ରୋହ ନିଆଁ ଲଗାଇଦେବି, ବ୍ରିଟିଶ ଶାସନ ଯନ୍ତ୍ରକୁ ଅଥୟ କରିଦେବି ।

ଏହି ବନ୍ଦୀଜୀବନ ଭିତରେ ସେ ତାଙ୍କର ସ୍ତ୍ରୀ ଚନ୍ଦ୍ରପ୍ରଭା ନାମରେ ଚନ୍ଦ୍ରପ୍ରଭା ନାମକ ଏକ ଉପନ୍ୟାସ ଲେଖିଥିଲେ । ହାତଲେଖା ଦୁଇଟି ଖାତାର ପାଣ୍ଡୁଲିପି ପଣ୍ଡିତ ଆକୁଳି ମିଶ୍ରଙ୍କ ପାଖରେ ଦେଖି ପଢିଥିଲି । ତାହା ପରେ ଛପାହେଲା କି ନାହିଁ ମତେ ଜଣା ନାହିଁ ।

ଓଡିଆ ଜାତିର ଜନଜୀବନ ସହ ନିଜକୁ ହଜାଇ ଦେଇଥିଲେ । ଓଡିଶା ଦେଶ ମିଶ୍ରଣ ଆନ୍ଦୋଳନର ସେ ଥିଲେ ଜଣେ ମୁଖ୍ୟ ନେତା । ବଙ୍ଗଳାର ମେଦିନୀପୁର ଓ ବିହାରର ସିଂହଭୂମି ଅଞ୍ଚଳରେ ଓଡିଆ ପ୍ରଚାର କରି ଗାଳିଗର୍ଜନା ଓ ମାଡ ଖାଇବାକୁ ପାଶ୍ଚାତ୍ ପଦ ହୋଇ ନ ଥିଲେ । ଆଜି କେତେଜଣ ଏପରି ସାହସ ଦେଖାଉଛନ୍ତି ?

ବକ୍ତା ହିସାବରେ ସେ ଥିଲେ ଅନୁପମ । ଏକାସାଙ୍ଗରେ ଲୋକଙ୍କୁ ହସାଇବା କନ୍ଦାଇବା ଓ ମତାଇବା କେତେଜଣ କରିପାରନ୍ତି । ବାଗ୍ମିତାର ଏକ ଶୈଳୀ ତାଙ୍କର ନିଜସ୍ୱ ନୁହେଁ । ପ୍ରଚ୍ଛନ୍ନ ଭାବରେ ତାଙ୍କର ମୌଳିକ ଗୁଣର ପରିଚୟ ମିଳୁଥିଲା, ଯେ ଶୁଣିଛି ମୁଗ୍ଧ ହୋଇଛି । ସେ ଭଳି ବ୍ୟକ୍ତି ଆଉ ମିଳିବେ କି ?

ଏ ସବୁଥିରେ ଥିଲା ତାଙ୍କର ଅତୁଲ୍ୟ ଦେଶପ୍ରୀତିର ଭାବନା । ବ୍ୟକ୍ତିଗତ କୁତ୍ସା ଓ ଅପବାଦ ପରିବର୍ତ୍ତେ ବ୍ରିଟିଶ ଅତ୍ୟାଚାର ଓ ଦମନ ବିରୁଦ୍ଧରେ ତାଙ୍କର ଉଦ୍‌ବୋଧନ ଲୋକମନପ୍ରାଣକୁ ସ୍ପର୍ଶକରୁଥିଲା । ସେଥିଲାଗି ବ୍ରିଟିଶ ସରକାରର ଏକ କୋକୁଆ ଭୟ ବରାବର ରହିଥିଲା ।

ଦେଶପ୍ରୀତିର ମାପକାଠି ନୁହେଁ କେବଳ ଜେଲଯିବା । ଦେଶପ୍ରେମର ଅସଲ ପରୀକ୍ଷା ହେଉଛି ସମସ୍ତ କାର୍ଯ୍ୟ ଓ ପ୍ରାଣ ଦେଶଲାଗି ନିୟୋଗ କରିବା । ତାଙ୍କର ସମସ୍ତ କାର୍ଯ୍ୟ ଏଇଥିଲାଗି କରୁଥିଲେ ।

ଏପରିକି ପାରଳାଖେମୁଣ୍ଡି ମନ୍ତ୍ରୀମଣ୍ଡଳରେ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ସରକାରୀ ପଦବୀରେ ଥାଇ ସୁଦ୍ଧା ବିଦ୍ରୋହୀ ଅଣ୍ଡର ଗ୍ରାଉଣ୍ଡରେ ଥିବା ରାମନନ୍ଦନ ମିଶ୍ରଙ୍କୁ ସେ ଆଶ୍ରୟ ଦେଇଥିଲେ । ମୁଁ ବି ସେତେବେଳେ ପୁଲିସ ଗୋଚର ଅନ୍ତରରେ ରହି ଛପି ଥିଲି । ରାମନନ୍ଦନ ଆସି ମୋ ସହ ମନ୍ତ୍ରଣା କରିଥିଲେ । ପୁଣି ଏକ ସରକାରୀ ଗାଡି ରାମନନ୍ଦନଙ୍କୁ ଯୋଗାଇ ଦେଇଥିଲେ । ଏଗୁଡିକ ଚରମ ଦେଶପ୍ରୀତିର ନିଦର୍ଶନ ।

ସେ ଦେଶ ପାଇଁ, ଓଡିଆ ଜାତି ପାଇଁ ନିଜର ପ୍ରାଣ ଉତ୍ସର୍ଗ କରିବା ବ୍ୟତୀତ ନିଜର ବ୍ୟକ୍ତିଗତ ସମ୍ପତ୍ତି ଅର୍ଜନ କରିନଥିଲେ କିମ୍ବା ସମ୍ପଦ ବଢାଇ ନଥିଲେ ।

ମୁଁ ତାଙ୍କୁ ନମସ୍କାର କରୁଛି ।



# ଓଡିଶାର ଅନ୍ୟତମ କୃତି ପୁରୁଷ : ଯଦୁମଣି ମଙ୍ଗରାଜ

ଅଧ୍ୟାପକ ଦୁର୍ଗାଚରଣ କୁଅଁର

ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନରେ ଅନ୍ୟତମ କର୍ଣ୍ଣଧାର, ଅସାଧାରଣ ବାଗ୍ମୀ ଏବଂ ନିର୍ଭୀକ ଦେଶସେବକ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଆଜି ଓଡିଶାର ଜନମାନସରୁ ବିସ୍ମୃତପ୍ରାୟ । ପ୍ରାଗ୍ ସ୍ୱାଧୀନତା କାଳରେ ତଥା ଦେଶ ସ୍ୱାଧୀନ ହେବା ପରେ ଓଡିଶାର ଯେଉଁ କେତେଜଣ କୃତି ସନ୍ତାନ ଦେଶସେବା ପାଇଁ ଆତ୍ମୋତ୍ସର୍ଗ କରିଥିଲେ ସେମାନଙ୍କ ମଧ୍ୟରେ ଯଦୁମଣି ମଙ୍ଗରାଜଙ୍କର ଏକ ବିଶିଷ୍ଟ ସ୍ଥାନ ରହିଛି । ତାଙ୍କର ନିର୍ଭିକତା, ସ୍ପଷ୍ଟବାଦୀତା ଏବଂ ନିରଳସ ଦେଶସେବା ପାଇଁ ଲୋକେ ଆଦରରେ ତାଙ୍କୁ ରଏଲ୍ ଟାଇଗର ଅଫ୍ ଉତ୍କଳ ବୋଲି କହୁଥିଲେ ।

ଓଡିଶାର ଏହି କୃତି ପୁରୁଷ ୧୮୯୪ ମସିହା ଜାନୁଆରୀ ପହିଲା ତାରିଖରେ ବର୍ତ୍ତମାନର କେନ୍ଦ୍ରାପଡା ଜିଲ୍ଲା ଅନ୍ତର୍ଗତ କରିଲୋ ଗ୍ରାମରେ ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଜଣେ ମେଧାବୀ ଛାତ୍ର ହିସାବରେ ତାଙ୍କର ସୁଖ୍ୟାତି ଥିଲା । ପ୍ରଥମ ଶ୍ରେଣୀରେ ମେଟ୍ରିକ୍ ପାସ୍ କରି କଲେଜର ବିଜ୍ଞାନ ଶ୍ରେଣୀର ସେ ନାମ ଲେଖାଇଥିଲେ । ବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ଥିଲା ଓ କୃତିତ୍ୱର ସହିତ ସେ ବିଜ୍ଞାନରେ ସ୍ନାତକ ଡିଗ୍ରି ହାସଲ କରିଥିଲେ । ଛାତ୍ରଜୀବନରୁ ସେ ତାଙ୍କର ଅସାଧାରଣ ବାଗ୍ମୀତାର ପରିଚୟ ଦେଇଥିଲେ ଏବଂ ଦେଶର ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇଥିଲେ । ୧୯୨୧ ସାଲରେ ଗାନ୍ଧିଜୀଙ୍କ ଆହ୍ୱାନରେ ପାଠପଢା ଛାଡି ଅସହଯୋଗ ଆନ୍ଦୋଳନରେ ଯୋଗଦେବା ପରଠାରୁ ତାଙ୍କ ଜୀବନର ମୋଡ଼ ସଂପୂର୍ଣ୍ଣ ବଦଳି ଯାଇଥିଲା । ସେ ସମୟଠାରୁ ଦେଶ ସ୍ୱାଧିନ ହେବା ପର୍ଯ୍ୟନ୍ତ ଜଣେ ନିର୍ଭୀକ ସ୍ୱାଧୀନତା ସଂଗ୍ରାମୀ ଭାବେ ନିଜକୁ ସଂପୂର୍ଣ୍ଣ ଉତ୍ସର୍ଗ କରିଦେଇ ସେ ବହୁବାର କାରାବରଣ କରିଥିଲେ । ତାଙ୍କ ସମୟରେ ସେ ଥିଲେ ଜଣେ ଅସାଧାରଣ ବାଗ୍ମୀ । ଓଡିଆ, ବଙ୍ଗଳା, ହିନ୍ଦୀ ଓ ଇଂରାଜୀ ଭାଷାରେ ସେ ଅନର୍ଗଳ ବକ୍ତୃତା

ଦେଇପାରୁଥିଲେ । ପୁରପଲ୍ଲୀରେ ଜାତୀୟ କଂଗ୍ରେସ ଓ ମହାତ୍ମା ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର କରି ଓଡିଶାରେ ସ୍ୱାଧିନତା ଆନ୍ଦୋଳନକୁ ଆଗେଇନେବା ଦିଗରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ତାଙ୍କର ଓଜସ୍ୱିନୀ ଭାଷଣ ଶୁଣିବା ପାଇଁ ସଭାମାନଙ୍କରେ ଅସମ୍ଭବ ଲୋକ ଭିଡ ହେଉଥିଲା । ଲୋକଙ୍କୁ ହସାଇ, ମଜାଇ, ତତାଇ ଉଦ୍‌ବୋଧିତ କରିବା ଦିଗରେ ତାଙ୍କ ଭଳି ବାଗ୍ମୀ ସେ ସମୟରେ କେହି ନ ଥିଲେ । କେଉଁ ଠାରେ ସଭା କରିବାକୁ ହେଲେ କେବଳ ମଙ୍ଗରାଜେ ଆସୁଥିବା ବିଷୟ ପ୍ରଚାର ହୋଇଗଲେ ସହସ୍ର ସହସ୍ର ସଂଖ୍ୟାରେ ଲୋକ ଆସି ରୁଣ୍ଡ ହୋଇଯାଉଥିଲେ । ମଙ୍ଗରାଜ ଙ୍କ ନିରଳସ ଦେଶସେବା, ନିର୍ଭୀକତା ଓ ବାଗ୍ମୀତା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଜାତୀୟ କବି ବୀରକିଶୋର ଲେଖିଥିଲେ ,

ତରୁଣ ବୟସୁ ଥିଲେ ସେ ସାହସୀ
ସଂପଦେ ବିପଦେ ସଦା ରହି ଖୁସି
ନିର୍ଭୀକ ଚିତ୍ତରେ କହୁଥିଲେ କଥା
ଆନକୁ ହସାଇ ନିଜେ ନ ହସି
ଜାଲିଆନାବାଗ ଅନ୍ଧକୂପ ହତ୍ୟା
ଖେଳାଇଲା ଯେବେ ହାହାକାର ବାତ୍ୟା
ମହାତ୍ମା ଆହ୍ୱାନେ ସାଜିଲେ ସୈନିକ
ସ୍ୱାଧିନତା ଯୁଦ୍ଧ ଶିବିରେ ଆସି ।
ତାଙ୍କ ଡାକଶୁଣି ଶତ ଶତ ଯୁବା
ସମର ପ୍ରାଙ୍ଗଣେ ହେଲେ ଆସି ଉଭା
ମରଣ ସମ୍ମୁଖେ ଛାତି ପତାଇଲେ
ଲଢିବେ ପାଷାଣ କାରାରେ ପଶି ।
ପାରାବାରଠାରୁ ଦରବାର ଯାକେ
ଶଙ୍କି ଯାଉଥିଲେ ତାଙ୍କ ସିଂହଡାକେ

ଘୋର ଝଡ ଘୋଟ ଝଂଜା ଭିତରେ ସେ
ଗତି କରୁଥିଲେ ନୋହି ଉଦାସୀ ।

ଯଦୁମଣି ଉତ୍କଳଗୌରବ ମଧୁସୂଦନ ଓ ଉତ୍କଳମଣୀ ଗୋପବନ୍ଧୁଙ୍କର ଅତି ପ୍ରିୟଭାଜନ ଥିଲେ । ଯେଉଁ ଅନ୍ୟମାନେ କାର୍ଯ୍ୟ କରିବାକୁ ସାହସ କରୁ ନ ଥଲେ ସେ ଦାୟିତ୍ୱ ଯୁବକ ଯଦୁମଣିଙ୍କ ଉପରେ ନ୍ୟସ୍ତ କରାଗଲେ ଅତି ନିର୍ଭିକ ଭାବରେ ଚତୁରତାର ସହିତ ତାହା ସେ ସଂପାଦନ କରିପାରୁଥିଲେ । କଂଗ୍ରେସରେ ଥାଇ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଆନ୍ଦୋଳନର ଲକ୍ଷ୍ୟ ହାସଲ କରିବା ସୁବିଧାଜନକ ମନେ ନ ହେବାରୁ ଉତ୍କଳଗୌରବ ମଧୁସୂଦନ ଯେତେବେଳେ ଜାତୀୟ ଆନ୍ଦୋଳନରୁ ଓହରିଯାଇ ଉତ୍କଳ ସମ୍ମିଳନୀ ମାଧ୍ୟମରେ ସଂଗ୍ରାମ ଚାଲୁରଖିବାର ନିଷ୍ପତ୍ତି ନେଲେ, ଯଦୁମଣି ମଙ୍ଗରାଜ ଉତ୍କଳମଣି ଗୋପବନ୍ଧୁଙ୍କ ସହିତ ରହି ସ୍ୱାଧୀନତା ସଂଗ୍ରାମରେ ସକ୍ରିୟ ଅଂଶଗ୍ରହଣ କରିଥିଲେ। ଏହା ସତ୍ୱେ ଗୋପବନ୍ଧୁ କିମ୍ବା ଯଦୁମଣି ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଆନ୍ଦୋଳନରୁ ନିବୃତ ହୋଇନଥିଲେ। ମେଦିନୀପୁରକୁ ଓଡିଶାରେ ମିଶାଇବା ପାଇଁ ଯେଉଁ ଆନ୍ଦୋଳନ ହୋଇଥିଲା ସେଥିରେ ଯଦୁମଣି ମଙ୍ଗରାଜ ଉଲ୍ଲେଖନୀୟ ଅଂଶଗ୍ରହଣ କରିଥିଲେ । ମେଦିନୀପୁରର ବିଶିଷ୍ଟ ଓଡିଆ ନେତା ବାରିଷ୍ଟର ବୀରେନ୍ଦ୍ର ସାସମଲ ପ୍ରଥମେ ମେଦିନୀପୁରକୁ ଓଡିଶାରେ ମିଶାଇବା ସପକ୍ଷରେ ଥିଲେ ବି ପରେ ମତ ପରିବର୍ତ୍ତନ କରି ମେଦିନୀପୁରକୁ ବଙ୍ଗଳାରେ ରଖିବା ଦିଗରେ ନେତୃତ୍ୱ ନେଲେ, ଯେଉଁଥି ପାଇଁକି ବଙ୍ଗବାସୀମାନେ ତାଙ୍କୁ ଦେଶପ୍ରାଣ ପଦବୀରେ ଭୂଷିତ କରିଥିଲେ । ଯଦୁମଣି ମଙ୍ଗରାଜ ମେଦିନୀପୁରର ଓଡିଆ ବହୁଳ ଅଞ୍ଚଳମାନଙ୍କରେ ସଭାସମିତି କରି ତାଙ୍କର ଓଜସ୍ୱିନୀ ଭାଷଣରେ ଓଡିଆ ଭାଷୀମାନଙ୍କୁ ଓଡିଶା ସହିତ ମିଶ୍ରଣ ପାଇଁ ଆହ୍ୱାନ ଜଣାଇବା ସମୟରେ ଗୁଣ୍ଡାଶ୍ରେଣୀର ଲୋକ ଢେଲାପଥର ଫିଙ୍ଗି ତାଙ୍କୁ ରକ୍ତାକ୍ତ କରିଦେଇଥିଲେ । ସେ ତାଙ୍କ ଭାଷଣ ବନ୍ଦ କରିନଥିଲେ କିମ୍ବା ଉଦ୍ୟମରୁ ବିରତ ହୋଇନଥିଲେ । ନୟାବସାଣ ମେଦିନୀପୁର ଜିଲ୍ଲାରେ ଥିବା ମୟୂରଭଞ୍ଜ ମହାଜନଙ୍କର ଏକ ଜମିଦାରୀ ଏବଂ ଏହା ଓଡିଆବହୁଳ ଅଞ୍ଚଳ । ଏଠାରେ ଭାଷଣ ଦେବା ସମୟରେ ମଧ ମଙ୍ଗରାଜଙ୍କୁ ତୀବ୍ର ବିରୋଧରେ ସମ୍ମୁଖୀନ ହେବାକୁ ପଡିଥିଲା, କିନ୍ତୁ ନିର୍ଭୀକ ମଙ୍ଗରାଜ ସେଥିପ୍ରତି ଭ୍ରୁକ୍ଷେପ କରି ନଥିଲେ । ୧୯୫୫ ମସିହାରେ ଯେଉଁ ସୀମା ଆନ୍ଦୋଳନ

ଓଡିଶାରେ ଭୟଙ୍କର ରୂପ ଧାରଣ କରିଥିଲା ଏବଂ ଯେଉଁ ଆନ୍ଦୋଳନରେ ସୁନିଲ ଦତ୍ତ ଓ ବେଙ୍ଗପାଣିଆ ପୁଲିସ୍ ଗୁଳିରେ ମୃତ୍ୟୁବରଣ କରିଥିଲେ ସେ ଆନ୍ଦୋଳନରେ ଯଦୁମଣି ମଙ୍ଗରାଜ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ଓ ଷଡେଇକଳା ଖରସୁଆଁକୁ ଓଡିଶାରେ ମିଶାଇବା ପାଇଁ ପ୍ରବଳ ଜନଜାଗରଣ ସୃଷ୍ଟି କରିଥିଲେ ।

ଦେଶ ଓ ଲୋକସେବା ଥିଲା ମଙ୍ଗରାଜଙ୍କ ଜୀବନର ବ୍ରତ । ସେ ଥିଲେ ସରଳ, ସ୍ପଷ୍ଟବାଦୀ ଓ ନିର୍ଭୀକ । ଅନ୍ୟାୟ ଅନୀତି ବିରୁଦ୍ଧରେ ଲଢାଇ କରିବା ପାଇଁ ସେ କେବେ ପଶ୍ଚାତ୍‌ପଦ ହେଉ ନ ଥିଲେ । ଯିଏ ଯେତେ ଉଚ୍ଚ ସ୍ଥାନରେ ଥାଆନ୍ତୁନା କାହିଁକି ଦରକାର ପଡିଲେ ନ୍ୟାୟନିଷ୍ଠ ଓ ତୀକ୍ଷ୍ଣଧୀ ମଙ୍ଗରାଜଙ୍କର ଶାଣିତ ସମାଲୋଚନାରୁ ତାଙ୍କୁ ତ୍ରାହି ମିଳୁନଥିଲା । ଏଭଳି ଜଣେ ସ୍ୱାଧୀନଚେତା ବ୍ୟକ୍ତି, ଦେଶ ସ୍ୱାଧୀନ ହେବା ପରେ ନେତୃସ୍ଥାନୀୟ ଲୋକଙ୍କ ମଧ୍ୟରେ ଯେଉଁ କ୍ଷମତା କନ୍ଦଳ ଆରମ୍ଭ ହୋଇଯାଇଥିଲା ସେଥିରୁ ନିଜକୁ ଦୂରେଇ ରଖିଥିଲେ । ଥରେ ତାଙ୍କୁ ମନ୍ତ୍ରିମଣ୍ଡଳର ପାର୍ଲାମେଣ୍ଟାରୀ ସେକ୍ରେଟାରୀ ଓ ପରେ ଓଡିଶା ବିଧାନସଭାର ଉପବାଚସ୍ପତି ରୂପେ ଅଧିଷ୍ଠିତ କରାଯାଇଥିଲା । ପଦପଦବୀ ପାଇଁ ତାଙ୍କ ମନରେ କୌଣସି ଶୋଚନା ନ ଥିଲା । ପଦପଦବୀରେ ଥାନ୍ତୁ ନ ଥାନ୍ତୁ ସାରାଜୀବନ ସେ ଲୋକ ସଂପର୍କ ଓ ଜନସେବା ସ୍ୱାଭାବିକ ରୀତିରେ ବଜାୟ ରଖିଥିଲେ ।

କଟକ ପ୍ୟାରୀମୋହନ ଏକାଡେମୀରେ ଛାତ୍ର ଥିବା ସମୟରେ ସ୍ୱର୍ଗୀୟ ଯଦୁମଣି ମଙ୍ଗରାଜଙ୍କ ବ୍ୟକ୍ତିଗତ ସଂପର୍କରେ ଆସିବାର ସୁଯୋଗ ମୋର ହୋଇଥିଲା । ସେ ମଧ ଥିଲେ ପ୍ୟାରିମୋହନ ଏକାଡେମୀର ଜଣେ ପୁରାତନ କୃତିଛାତ୍ର । ପରିଣତ ବୟସରେ ବି ସେ ତରୁଣ ଛାତ୍ରମାନଙ୍କ ସହିତ ସହଜରେ ମିଶି ପାରୁଥିଲେ ଏବଂ ସ୍ୱଭାବସୁଲଭ ହାସ୍ୟ କୌତୁକଭରା ବାକ୍ୟାଳାପ ମଧ୍ୟରେ ନିଜେ ବଡ଼ ହୋଇ ଦେଶକୁ ଆଗେଇ ନେବାପାଇଁ ଛାତ୍ରମାନଙ୍କୁ ପରାମର୍ଶ ଦେଉଥିଲେ । ଗରିବ ଛାତ୍ରମାନଙ୍କୁ ସେ ଯଥାଶକ୍ତି ଆର୍ଥିକ ସାହାଯ୍ୟ ମଧ୍ୟ ଦେଉଥିଲେ । ଓଡିଶାର ଜଣେ ପ୍ରତିଷ୍ଠିତ ଜନନାୟକ ଓ ସମ୍ମାନାସ୍ପଦ ବ୍ୟକ୍ତିହୋଇ ମଧ୍ୟ ଗର୍ବ ବା ଅହଂକାର ତାଙ୍କୁ ସ୍ପର୍ଶ କରିନଥିଲା । ସବୁ ଶ୍ରେଣୀର ଲୋକଙ୍କ ସହିତ ସେ ଅତି ସହଜ ଭାବରେ ମିଶିଯାଇ ପାରୁଥିଲେ ।

ଓଡିଆ ଜାତି ତାର ଏହି କୃତି ପୁରୁଷଙ୍କର ସ୍ମୃତିରକ୍ଷା ପାଇଁ ଏଯାବତ୍ କିଛି କରିନଥିବା ଅତ୍ୟନ୍ତ କ୍ଷୋଭର ବିଷୟ । କଟକ ଓ ଭୁବନେଶ୍ୱରରେ ଯଦୁମଣି ମଙ୍ଗରାଜଙ୍କର ପୂର୍ଣ୍ଣାବୟବ ବ୍ରୋଞ୍ଜ ପ୍ରତିମୂର୍ତ୍ତି ସ୍ଥାପନ ସହ କୌଣସି ଅଞ୍ଚଳ ବା ମୁଖ୍ୟ ରାସ୍ତାକୁ ତାଙ୍କ ନାମରେ ନାମିତ କରାଗଲେ ତାଙ୍କର ସ୍ମୃତି କିଛିଟା ହେଲେ ରକ୍ଷା କରାଯାଇପାରନ୍ତା । ଓଡିଶାବସୀ ଏ ଦିଗରେ ତୁରନ୍ତ ପଦକ୍ଷେପ ଗ୍ରହଣ କରିବା ଉଚିତ । ଯେଉଁ ଜାତି ନିଜର କୃତି ସନ୍ତାନମାନଙ୍କୁ ଯଥାଯଥ ସମ୍ମାନ ଦେଇ ଜାଣେନାହିଁ ସେ ଜାତି ପକ୍ଷରେ ବଡ଼ ହେବାର ଆଶା ଏକ ବିଡମ୍ବନା ମାତ୍ର ।



# ଓଡିଆ ଆନ୍ଦୋଳନ ଓ ଯଦୁମଣି

ଡଃ ଭଗବ ଚରଣ ନାୟକ

ଓଡିଆ ଭାଷାଭାଷୀ ଅଞ୍ଚଳକୁ ଏକାଠି କରିବା ପାଇଁ ଯଦୁମଣି ମଙ୍ଗରାଜ ବହୁତ କଷ୍ଟ ସହିଥିଲେ । ମେଦିନୀପୁର କେମିତି ଓଡିଶାରେ ମିଶିବ ସେଥିପାଇଁ ସେ ବହୁତ ଚେଷ୍ଟା କରିଥିଲେ ।

ଯଦୁମଣି ମଙ୍ଗରାଜ ଥିଲେ ଆଜନ୍ମ ବିପ୍ଳବୀ । ସେ ଛାତ୍ରଜୀବନରୁ ବେଶ ମିଶ୍ରଣ ଆନ୍ଦୋଳନରେ ଜଡ଼ିତ ଥିଲେ । ମଧୁବାବୁ ତାଙ୍କୁ ସ୍ୱେଚ୍ଛାସେବୀ ମାନଙ୍କର ଅଧ୍ୟକ୍ଷ କରିଥିଲେ । ୧୯୧୮ ମସିହାର କଥା । ଏହି ସମୟରେ କଟକରେ ଉତ୍କଳ ସମ୍ମିଳନୀ ଅଧିବେଶନ ହେବାର ଥିଲା । ଆଶ୍ଚର୍ଯ୍ୟର କଥା, ମଧୁବାବୁ ଓ ମଙ୍ଗରାଜଙ୍କ ମଧ୍ୟରେ ମତଭେଦ ଦେଖାଗଲା । ମଙ୍ଗରାଜ ମଧୁବାବୁଙ୍କୁ ରୋକ୍‌ଠୋକ୍ କହିଲେ, ତାଙ୍କ କଥା ନ ରହିଲେ ସେ ଓ ତାଙ୍କ ସ୍ୱେଚ୍ଛାସେବୀମାନେ ଅଧିବେଶନରେ ଯୋଗ ଦେବେନାହିଁ ।

ଉତ୍କଳ ସମ୍ମିଳନୀରେ ସେ ଜଣେ ଦକ୍ଷ ନେତା ଥିଲେ । ବିଚ୍ଛିନ୍ନ ଓଡିଆ ଭାଷୀ ଅଞ୍ଚଳକୁ ଏକାଠି କରିବା ପାଇଁ ସେ ବରାବର କାମ କରୁଥିଲେ । ମଣ୍ଟଫୋର୍ଡ଼ ରିଫର୍ମ ପାଇଁ ଓଡିଶାକୁ ଗୋଟିଏ ସବ୍‌ପ୍ରୋଭିନ୍‌ସ କରିବାକୁ ସୁପାରିଶ୍ ଥିଲା । ମଧୁବାବୁ ଏହାକୁ ଗ୍ରହଣ କରିବାକୁ ରାଜି ହୋଇଥିଲେ । ସେ କହୁଥିଲେ କାନ୍ଦୁଥିବା, ଯାହା ପାଉଥିବା ବାନ୍ଧୁଥିବା । କିନ୍ତୁ ଯଦୁମଣିବାବୁ ଏ କଥାକୁ ଗ୍ରହଣ କଲେ ନାହିଁ । ସେ ମଧୁବାବୁଙ୍କୁ ବିରୋଧ କଲେ ।

୧୯୧୫-୧୬ ମସିହାର କଥା । ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ଗୋଦବରୀଶ ମିଶ୍ରଙ୍କୁ କହିଲେ ସିଂହଭୂମି ଯିବା ପାଇଁ । ଗୋଦାବରୀଶ ବାବୁ ସାଙ୍ଗରେ ଯଦୁମଣି ମଙ୍ଗରାଜଙ୍କୁ ନେଇଗଲେ । କାରଣ ସେ ଜାଣିଥିଲେ ଯଦୁମଣି ମଙ୍ଗରାଜ ଭଲ ଭାଷଣ ଦିଅନ୍ତି । ଲୋକେ ତାଙ୍କ ଭାଷଣ ଶୁଣିଲେ ମାତି ଉଠିବେ । ଯାହାହେଉ ପଣ୍ଡିତ ଗୋଦାବରୀଶ ଓ ଯଦୁମଣି ମଙ୍ଗରାଜ ଦୁହେଁ ଯାଜ ଆଗ ମେଦିନୀପୁର ଯାଇଥିଲେ ।

ମେଦିନୀପୁରଠାରେ ସଭା ବସିଲା । ସେହି ସଭାରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହ ଯଦୁମଣି ମଙ୍ଗରାଜ ଯୋଗ ଦେଇଥିଲେ । ସେତେବେଳେ ମେଦିନୀପୁରର ବାରିଷ୍ଟର ବୀରେନ୍ଦ୍ର ସାସମଲ ଓଡ଼ିଆ ଆନ୍ଦୋଳନକୁ ବିରୋଧ କରୁଥିଲେ । ବୀରେନ୍ଦ୍ର ସାସମଲଙ୍କର ପୂର୍ବପୁରୁଷ ଓଡିଆ ଥିଲେ । ତାଙ୍କ ଗୋସେଇଁ ମା ଓଡିଆଣୀ ଥିଲେ । ସେ କିନ୍ତୁ କହୁଥିଲେ ମୋ ଗୋସେଇଁ ମା ଓଡ଼ିଆଣୀ ହେଲେ କଣ ହେଲା, ମୁଁ କିନ୍ତୁ ଓଡ଼ିଆ ନୁହେଁ । ସେ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଘୃଣା କରୁଥିଲେ । ଏଣୁ ବଙ୍ଗାଳୀମାନେ ତାଙ୍କୁ ଦେଶପ୍ରାଣ ଉପାଧିରେ ଭୂଷିତ କରିଥିଲେ । ଫଳରେ ଏହି ବାରିଷ୍ଟର ବୀରେନ୍ଦ୍ର ସାସମଲ ଗୁଣ୍ଡା ଲଗାଇ ଗୋଦାବରୀଶ ମିଶ୍ରଙ୍କ ଉପରକୁ ଢେଲା ପକାଇଲେ ।

ନିର୍ଭୀକ, ସ୍ପଷ୍ଟବାଦୀ, ବିପ୍ଳବୀ ଯଦୁମଣି ମଙ୍ଗରାଜ ସେହି ଟେକା ସାମନାରେ ଠିଆ ହୋଇଗଲେ । ସେ ଟେକାରୁ ଗୋଟିଏ ଧରି କଠୋର ସ୍ୱରରେ କହିଲେ, ହେ ବୀରେନ୍ଦ୍ର ସାସମଲ ! ମନେରଖ ଏ ଟେକା ତୁମର ଅସଭ୍ୟତାର ଚିହ୍ନ ସ୍ୱରୂପ ଓଡ଼ିଶା ମ୍ୟୁଜିୟମରେ ରହିବ ।

୧୯୨୮ ମସିହା ଡିସେମ୍ବର ମାସର କଥା । କଲିକତାରେ ଗୋଟିଏ ସର୍ବଦଳୀୟ ସମ୍ମିଳନୀ ବସିଲା । ଏଥିରେ ପଣ୍ଡିତ ମୋତିଲାଲ୍ ନେହେରୁ ସଭାପତି ହୋଇଥିଲେ । ଏହି ସଭାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପ୍ରଶ୍ନକୁ ଏଡ଼ାଇ ଦିଆଗଲା । ସଭାପତି ମୋତିଲାଲ୍ ଜୀ ମଧ ଓଡ଼ିଆ ପ୍ରତିନିଧିଙ୍କୁ ତାଚ୍ଛଲ୍ୟ କଲେ । ନିର୍ଭିକ ଓଡ଼ିଆ ବୀର ଯଦୁମଣି ବାବୁ ସାଙ୍ଗେ ସାଙ୍ଗେ ରାତାରାତି ଅନେକଙ୍କୁ ସଙ୍ଗଠିତ କରାଇ ଗୋଟିଏ ଶୋଭାଯାତ୍ରା ବାହାର କଲେ । ସେହି ଶୋଭାଯାତ୍ରା ସଭାମଣ୍ଡପ ଆଡ଼କୁ ମାଡ଼ି ଚାଲିଲା । ସେତେବେଳର କଂଗ୍ରେସ ଯୁବନେତା ଜବାହର ଲାଲ୍ ନେହେରୁ ଓ ସୁଭାଷ ଚନ୍ଦ୍ର ବୋଷ ଯଦୁମଣିଙ୍କୁ ବୁଝାଇ ମିଳାମିଶା କଲେ । ସମାଧାନର ବାଟ ବାହାରିଲା । ଓଡିଶା ପ୍ରଶ୍ନ ସଭାରେ ଆଲୋଚିତ ହେଲା । ଓଡିଶା ସୀମା ନିର୍ଦ୍ଧାରଣ କରିବା ପାଇଁ ଓଡେନେଲ୍ କମିଟି ବସିଲା । ଏହି କମିଟି ଆଗରେ ବିଚ୍ଛିନ୍ନାଞ୍ଚଳକୁ ମିଶାଇବା ପାଇଁ ଯଦୁମଣି ବାବୁ ଅକାଟ୍ୟ ଯୁକ୍ତି କଲେ ଓ ବହୁତ ପ୍ରକାର ଦଲିଲ୍ ଦେଖାଇଲେ ।

ମେଦିନୀପୁରକୁ ଓଡିଶାରେ ମିଶାଇବା ପାଇଁ ଯଦୁମଣିବାବୁ ଓଡିଆ ବହୁଳ ଅଞ୍ଚଳମାନଙ୍କରେ ସଭାସମିତି କରୁଥିଲେ । ଓଡିଆମାନଙ୍କୁ ଏକାଠି କରିବା ପାଇଁ ଭାଷଣ ଦେଉଥିଲେ । ଆହ୍ୱାନ ଦେଉଥିଲେ । ହେଲେ ବି କ ବୀରେନ୍ଦ୍ର ସାସମଲ ଯଦୁମଣିଙ୍କ ଉପରକୁ ଗୁଣ୍ଡା ଲଗାଇ ଟେକା ପଥର ଫିଙ୍ଗୁଥିଲେ । ସେହି ଗୁଣ୍ଡାମାନଙ୍କ ଢେଲା ପଥର ମାଡ଼ରେ ରକ୍ତାକ୍ତ ହୋଇ ବି ଯଦୁମଣି ବାବୁ ଭାଷଣ ବନ୍ଦ କରୁନ ଥିଲେ । ମେଦିନୀପୁର ଜିଲ୍ଲାରେ ଥିବା ନୟାବସାନ ଥିଲା ମୟୂରଭଞ୍ଜ ମହାରାଜାଙ୍କର ଗୋଟିଏ ଜମିଦାରୀ । ଏହା ଏକ ଓଡ଼ିଆ ବହୁଳ ଅଞ୍ଚଳ । ଏଠାରେ ମଧ୍ୟ ଯଦୁମଣି ଭାଷଣ ଦେବା ସମୟରେ ତୀବ୍ର ବିରୋଧର ସମ୍ମୁଖୀନ ହୋଇଥିଲେ ।

୧୯୩୧ ମସିହାରେ ଓଡ୍ନେଲ କମିଟି ନିଯୁକ୍ତ ହେଲେ । ସେହି କମିଟି ବିଚ୍ଛିନ୍ନାଞ୍ଚଳର ସାକ୍ଷ୍ୟ ନେବାର ବ୍ୟବସ୍ଥା ହୋଇଥିଲା । ମେଦିନୀପୁରକୁ ଓଡ଼ିଆ ଲୋକେ ଓଡ଼ିଆ ଅଞ୍ଚଳ ବୋଲି ଦାବି କରୁଥିଲେ । ୧୭୬୫ ମିସିହାର କଥା । ସେତେବେଳେ ବଙ୍ଗ, ବହାର ଓ ଓଡ଼ିଶାର ଦେଓ୍ୱାନୀ ଇଷ୍ଟଇଣ୍ଡିଆ କମ୍ପାନୀ ତରଫରୁ ଲର୍ଡ଼ କ୍ଲାଇବଙ୍କୁ ଦିଆଯାଇଥିଲା । ସେତେବେଳେ ମେଦିନୀପୁର ଓଡିଶା ଭିତରେ ଥିଲା ।



# ସ୍ୱାଭିମାନୀ ଯଦୁମଣି

**ସମରେନ୍ଦ୍ର ବଳିଆର ସିଂହ**

ସେ ଥିଲେ ବୀର, ବାଗ୍ମୀ ପ୍ରବର ଦେଶ ପାଇଁ, ଜାତି ପାଇଁ, ନିରନ୍ତର ଯା ମୁଖରୁ ଝୁରୁଥିଲା କଥାର ତୀର କାମରେ ସେ ଥିଲେ ଧୂରନ୍ଧର ।

ଯଦୁମଣି ମଙ୍ଗରାଜ । ନାମ ହିଁ ଯଥେଷ୍ଟ । ବିଶେଷଣର ଆବଶ୍ୟକତା ନାହିଁ । ଏ ଜାତିର ମଙ୍ଗୁଆଳ ଥିଲେ ସେ । ସେ ଥିଲେ ଓଡିଶାର ମୁକୁଟବିହୀନ ସମ୍ରାଟ । ସେ କହୁଥିଲେ, ଦୁର୍ଦ୍ଧର୍ଷ ହୁଅ, ଶକ୍ତିଶାଳୀ ହୁଅ, ନିଜେ ବଡ ହୁଅ, ଅନ୍ୟକୁ ଭଲ କରି ଗଢି ଥୁଅ । ନିଜେ ପଙ୍ଗୁ ହେଲେ ସମଗ୍ର ଦେଶ ପଙ୍ଗୁ ପାଲଟି ଯିବ ।

ମଙ୍ଗରାଜ ଥିଲେ ଖଣ୍ଡାୟତ । ବୀରର ରକ୍ତ ତାଙ୍କ ଧମନୀରେ ପ୍ରବାହିତ ହେଉଥିଲା । ଦେଶ, ଜାତିର ଉନ୍ନତି ପାଇଁ ସେ ସତତ ଚେଷ୍ଟିତ ରହୁଥିଲେ । ରାଜାରାଜୁଡା ଜମିଦାରୀ ଶାସନ ବିରୋଧରେ ହେଉ ବା ଇଂରେଜମାନଙ୍କ ବିରୋଧରେ ହେଉ ସେ ସ୍ୱର ଉତ୍ତୋଳନ କରୁଥିଲେ । ସେ କହୁଥିଲେ, ମୁଁ ଯଦୁମଣି ମଙ୍ଗରାଜ । ମୁଁ ଏ ଯୁଗର ହନୁମାନ । ସମୁଦ୍ର ଡେଇଁଯାଇ ବିଲାତ- ଲଙ୍କାରେ ନିଆଁ ଲଗାଇ ଲଣ୍ଡନ ସହର ମୁଁ ପୋଡି ପକାଇବି । ସେଠାରେ ବନ୍ଦିନୀ ଥିବା ଭାରତ ମାତାକୁ ମୁକୁଳାଇ ଆଣିବି ।

ଖଣ୍ଡାୟତ - କ୍ଷତ୍ରିୟମାନଙ୍କର ସୁପ୍ତ ଶରୀର, ମନ, ଆତ୍ମାକୁ ସେ ଜାଗ୍ରତ କରାଇଥିଲେ ଖଣ୍ଡାୟତ - କ୍ଷତ୍ରିୟ ମହାସଭା ଗଠନ କରି । ସେ ଜାଣିଥିଲେ ସେ ସଂଗଠିତ ଶକ୍ତି ହିଁ ଅସାଧ ସାଧନ କରିପାରିବ । ଅତଏବ ଏକ ଲଢୁଆ ଜାତିର ପୂର୍ବ ଗୌରବ, ଐତିହ୍ୟ ପରମ୍ପରାକୁ ଯଦି ତାକୁ ମନେ ପକାଇ ଦିଆଯାଏ, ତେବେ ବହୁତ କିଛି ହୋଇପାରିବ । କଳିଙ୍ଗର ଲୋକମାନେ ଥିଲେ ସାହସୀ । ଖଣ୍ଡାୟତ - କ୍ଷତ୍ରିୟମାନେ ଥିଲେ ପ୍ରାଚୀନ ସମର ସଂସ୍କୃତିର ବାହକ । ଓଡିଆ ଜାତି ହେଲା ସ୍ୱାଭିମାନୀ । ପାଇକ ସଂସ୍କୃତିର ପୁନରୁଦ୍ଧାର କରି ଦେଶ ଓ ଜାତିକୁ ସମୃଦ୍ଧିର ଚରମ ସୋପାନରେ ଅଧିଷ୍ଠିତ କରିବା ମଙ୍ଗରାଜଙ୍କର ଲକ୍ଷ୍ୟ ଥିଲା । ଖୋର୍ଦ୍ଧାର ପାଇକମାନଙ୍କର ଶୌର୍ଯ୍ୟବୀର୍ଯ୍ୟର ଐତିହ୍ୟକୁ ସେ

ସର୍ବଦା ଜନସାଧାରଣଙ୍କୁ କହୁଥିଲେ । ଖୋର୍ଦ୍ଧା ପାଇକ ବିଦ୍ରୋହରେ ଓଡ଼ିଆମାନଙ୍କର ବୀରତ୍ୱ ଗାଥା ଶୁଣି ସେ ଉଲ୍ଲସିତ ହୋଇଯାଉଥିଲେ । ସେ ଥିଲେ ପୁରୁଷ ସିଂହ । ଯୁବପୀଢ଼ିର ଉନ୍ମେଷ ଏହି ସଂଗଠନ ମାଧ୍ୟମରେ ହେବା ପାଇଁ ସେ ଚାହୁଁଥିଲେ । ମଙ୍ଗରାଜଙ୍କୁ କୁହାଯାଉଥିଲା ରୟାଲ ଟାଇଗର ଅଫ ଉତ୍କଳ ।

ମଙ୍ଗରାଜ ବଜ୍ରନିର୍ଘୋଷ କଣ୍ଠରେ ଘୋଷଣା କରୁଥିଲେ । ବୀରବାହୁ ଉତ୍ତୋଳନ କରି, ବକ୍ଷର ଶୋଣିତ ଦେଇ ଜୀବନର ଚରମ ଲକ୍ଷ୍ୟ ହାସଲ କରିବାକୁ ସ୍ୱାଧୀନତା ଲଢେଇରେ ଅଗ୍ରସର ହୁଅ । ତାଙ୍କ କହିବାର ନିର୍ଯ୍ୟାସ ଥିଲା । ଜିଓ ମଗର ଶାନ୍‌ସେ ଜିଓ, ଶିର ଉଠାକେ ଜିଓ ।

ଖଣ୍ଡାୟତ - କ୍ଷତ୍ରିୟ ମହାସଭା ଗଠନ ପଛରେ ତାଙ୍କର କୌଣସି ଜାତିଆଣ ମନୋଭାବ ନ ଥିଲା । ଥିଲା ଏକ ଲଢୁଆ ମନୋଭାବ, ସଂଗ୍ରାମୀ ମନୋଭାବ ଅନ୍ୟାୟ, ଅନୀତି ବିରୋଧରେ ସଂଗ୍ରାମ କରିବା ପାଇଁ ଏହା ଥିଲା ପ୍ରକୃଷ୍ଟ କ୍ଷେତ୍ର । ସେ ସମୟରେ ଏହି ମହାସଭା କେବଳ ଓଡିଶାରେ ନୁହେଁ, ସମଗ୍ର ଭାରତରେ ଚହଳ ପକାଇ ଦେଇଥିଲା । ବହୁ ରାଜାଙ୍କର ମଧ୍ୟ ଏଥିପ୍ରତି ସମର୍ଥନ ଥିଲା । ବୁଦ୍ଧିଜୀବିମାନେ ମଧ୍ୟ ମଙ୍ଗରାଜଙ୍କ ମହାନ ଲକ୍ଷ୍ୟ ସମ୍ବନ୍ଧରେ ଅଭିହିତ ହୋଇ ଅକୁଣ୍ଠ ସମର୍ଥନ ନିବେଦନ କରିଥିଲେ । ମହାସଭାର ପ୍ରଥମ ସଭାପତି ଥିଲେ ମଙ୍ଗରାଜ । ନୃସିଂହ ଚରଣ ସାମନ୍ତସିଂହାର ଥିଲେ ସଂପାଦକ । ସମଗ୍ର ରାଜ୍ୟର ବିଭିନ୍ନ ଅଞ୍ଚଳରେ ସଭାସମିତି କରିବା ପାଇଁ ତାଙ୍କୁ ନିମନ୍ତ୍ରଣମାନ ଆସୁଥିଲା । ବହୁ ସଂଖ୍ୟାରେ ଲୋକମାନେ ଆସି ତାଙ୍କୁ ଢୋଲ, ଝାଞ୍ଜ, ଖୋଳ, ଶଙ୍ଖ, ମହୁରୀ, ବାଣ, ରୋଷଣୀ ସହ ପଟୁଆର କରି ସଭାସ୍ଥଳୀକୁ ପାଛୋଟି ନେଇଯାଉଥିଲେ। ପୁରୁଷଲୋକମାନେ ହରିବୋଲ ତଥା ସ୍ତ୍ରୀ ଲୋକମାନ ହୁଳହୁଳି ଧ୍ୱନି ସହ ଚନ୍ଦନ ପୁଷ୍ପ ଦେଇ ସ୍ୱାଗତ ସମ୍ବର୍ଦ୍ଧନା ଜଣାଉଥିଲେ । ବୀର ମଙ୍ଗରାଜ କୀ ଜୟ ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଉଥିଲେ । ମଙ୍ଗରାଜଙ୍କ ଜୀବନର ମନ୍ତ୍ର ଥିଲା ସଂଗ୍ରାମ, ଅବିରତ ସଂଗ୍ରାମ । ଉତ୍କଳମଣିଙ୍କର ପଛଘୁଞ୍ଚା ନାହିଁ ବୀରର ଜାତକେ କୁ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ତାଙ୍କର ଓଜସ୍ୱିନୀ ବକ୍ତୃତାରେ ଥିଲା ଯାଦୁ, ଯାହାକୁ ଶୁଣିବା ପାଇଁ ଲୋକମାନେ ଦୂର ଦୂରାନ୍ତରରୁ ଆସି ତାଙ୍କ ଆସିବା ପୂର୍ବରୁ ରୁଣ୍ଡ ହୋଇଯାଉଥିଲେ । ଡଃ ଭାବଗ୍ରାହୀ ମିଶ୍ର କହନ୍ତି ସେ ଖଣ୍ଡାୟତ କୂଳରେ

ଥିଲେ ଅନ୍ତଃ ପ୍ରଜ୍ଜ୍ଵଳିତା ବାକ୍ୟରାଶି ପୋଷିବାରେ ଓସ୍ତାଦ୍ । ତାଙ୍କର ଖଣ୍ଡା ଥିଲା ଭାଷା - ଜନତାର ଭାଷା । ସେହି ଭାଷା ପ୍ରୟୋଗରେ ସେ କେତେ ଲୋକଙ୍କୁ ଯୁଦ୍ଧରେ ହରେଇଛନ୍ତି, ତାର ଇୟତା ନାହିଁ । ତାଙ୍କରି ଭଳିଆ ବିଧାୟକ, ଉପବାଚସ୍ପତି ଆଉ ଦି ଗଣ୍ଡା ବାହାରିଲେ ବୋଧହୁଏ ଆମ ସାମାଜିକ ବିଧାନ ସଭାର ପରମ୍ପରାରେ ଯେଉଁ ଅବକ୍ଷୟ ଘଟିଚାଲିଛି ସେଥିରୁ ଉଦ୍ଧାର ପାଇଯାନ୍ତେ । ତେଣୁ ତାଙ୍କରି ଭଳିଆ ଭାଷା ଅସ୍ତ୍ରର ଅଧିକାରୀ ଖଣ୍ଡାୟତ ଆମ ରାଜନୀତିରେ ବହୁତ ବହୁତ ଲୋଡା ଯିଏ ହସେଇ ପାରିବ, ରସେଇ ପାରିବ ପୁଣି ସେହି କଥାବାଣରେ ମରମ ଦହିପାରିବ ।

ମଙ୍ଗରାଜ ଖଣ୍ଡାୟତ - କ୍ଷତ୍ରିୟ ଯୁବକମାନଙ୍କୁ ତାଲିମ ଦେବା ପାଇଁ ସବୁକିଛି ବ୍ୟବସ୍ଥା କରିଥିଲେ । ସେ ଜାଣିଥିଲେ ସ୍ୱାସ୍ଥ୍ୟ ହିଁ ସଂପଦ । ଅତଏବ ଆତ୍ମରକ୍ଷା ତଥା ଦେଶରକ୍ଷା ପାଇଁ ପ୍ରାଚୀନ ସମର କୌଶଳ, କ୍ରୀଡା, କସରତ, ଦଣ୍ଡ ବୈଠକ ଆଦି ଶିଖିବା ନିତ୍ୟାନ୍ତ ଆବଶ୍ୟକ । ମହାସଭା ଗଠନକୁ ସେତେବେଳେ କେତେକ ବ୍ୟକ୍ତି ସମାଲୋଚନା କରିଥିଲେ । ମାତ୍ର ସେଥିପ୍ରତି ଭ୍ରୁକ୍ଷେପ ନ କରି ସେ କହୁଥିଲେ ସିଂହକୁ ସିଂହ ପରି ବଞ୍ଚିବାକୁ ଦିଅ, ତାଙ୍କର ଦାୟାଦମାନେ ସ୍ୱଧର୍ମ ରକ୍ଷା କରନ୍ତୁ । ସେମାନେ ସିଂହ ନ ହୋଇ ଯଦି ମୂଷିକ ପରି ଆଚରଣ କରିବେ, ତେବେ ତାହା ହେବ ଜାତୀୟ ଅପମାନ । କାରଣ ସିଂହ ଯଦି ସ୍ୱଧର୍ମରେ ଅବହେଳା ପ୍ରଦର୍ଶନ କରେ, ତେବେ ଜୀବଜଗତର ମଙ୍ଗଳ ହେବ ନାହିଁ ।

ମହାସଭାର ପ୍ରଥମ ତାଲିମ ଶିବିର ପଡ଼ିଥିଲା ହରିଖଳଠାରେ । ଏକ ମାସ ପର୍ଯ୍ୟନ୍ତ ତାଲିମ ଚାଲିଥିଲା । କେବଳ କ୍ରୀଡା କସରତ ନୁହେଁ ପରୋପକାରୀ, ନୀତିନିଷ୍ଠ, ନିର୍ଭିକ ସର୍ବୋପରି ଏକ ସ୍ୱୟଂସଂପୂର୍ଣ୍ଣ ମନୁଷ୍ୟ ହେବା ପାଇଁ ଏହି ତାଲିମରେ ଶିଖା ଯାଉଥିଲା । ତାଲିମ ଶେଷରେ ଏକ ଶୋଭାଯାତ୍ରା କଟକ ରାଜାବଗିଚା ପର୍ଯ୍ୟନ୍ତ ଚାଲିଥିଲା । ଏହା ଫଳରେ ବହୁ ସଂଖ୍ୟାରେ ଯୁବକମାନେ ମହାସଭା ପ୍ରତି ଆକୃଷ୍ଟ ହୋଇ ଦେଶ ରକ୍ଷା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ଖଣ୍ଡାୟତ-କ୍ଷତ୍ରିୟ-ପାଇକସେନା ଗଠନ କରି ପାଇକ ଆଖଡାମାନ ଆୟୋଜନ କରୁଥିଲେ । ଗଣମାଣିତ୍ରୀ, ନରଣଗଡ଼, ବାଣପୁର, ଘୁମୁସର, ଚନ୍ଦକା, ଆଦି ବହୁ ସ୍ଥାନରେ ତାଲିମ ଶିବିରମାନ ଅନୁଷ୍ଠିତ ହୋଇଥିଲା । ମଙ୍ଗରାଜଙ୍କ ପ୍ରେରଣାରେ ସ୍ୱାଧୀନତା ସଂଗ୍ରାମୀ ବ୍ରଜକିଶୋର ଧଳ

ବାଂକୀଶ-ଅନୁଆରୀ ଗ୍ରାମଠାରେ ଢେଙ୍କାନାଳ, ଆଠଗଡ,ତିଗିରିଆ, ବଡ଼ମ୍ବା, ନରସଂହପୁର ଖଣ୍ଡପଡା ନୟାଗଡ ଆଦି ରାଜ୍ୟରୁ ଚାଳିଶ ହଜାର ଖଣ୍ଡାୟତ କ୍ଷତ୍ରିୟମାନଙ୍କୁ ଏକତ୍ରିତ କରି ଏକ ସମ୍ମିଳନୀ ଆୟୋଜିତ କରିଥିଲେ । ଏପରି ସମ୍ମିଳନୀ ଗୁଡିକରେ ମୁଖ୍ୟ ପୃଷ୍ଠପୋଷକ ଥିଲେ ମଙ୍ଗରାଜ । ଜାତୀୟ ସଂହତି ରକ୍ଷା କ୍ଷେତ୍ରରେ ଏହି ସମ୍ମିଳନୀ ଗୁଡିକ ବିଶେଷ ଭୂମିକା ନିର୍ବାହ କରୁଥିଲେ ।

କଟକ ରାଜାବଗିଚାରେ ମଙ୍ଗରାଜ ଏକ ଖଣ୍ଡାୟତ- କ୍ଷତ୍ରିୟ ଛାତ୍ରାବାସ ଗଠନ କରିଥିଲେ । କଟକରେ ପଢିବା ପାଇଁ ଗ୍ରମାଞ୍ଚଳରୁ ଆସୁଥିବା ଛାତ୍ରମାନଙ୍କୁ ଏଠାରେ ରହିବା ଖାଇବା ପିଇବାର ବନ୍ଦୋବସ୍ତ କରି ଦେଉଥିବାରୁ ଛାତ୍ର ସମାଜରେ ଆଦର ତଥା ସମ୍ମାନର ପାତ୍ର ହୋଇଥିଲେ ।

ମହାସଭା ତରଫରୁ ମଙ୍ଗରାଜ ପାଇକ ରେଜିମେଣ୍ଟ ଗଠନ କରିବା ପାଇଁ ସେ ବହୁବାର ଉଦ୍ୟମ କରିଥିଲେ । ପ୍ରାୟ ସବୁ ଲଢୁଆ ଜାତିର ରେଜିମେଣ୍ଟ ଥିବା ବେଳେ ଓଡିଆମାନଙ୍କର କୌଣସି ରେଜିମେଣ୍ଟ ନ ଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ । ରାଜନୈତିକ ଇଚ୍ଛାଶକ୍ତି ତଥା କତିପୟ ବ୍ୟକ୍ତବିଶେଷଙ୍କ ଚକ୍ରାନ୍ତ ଯୋଗୁଁ ତାଙ୍କର ଏହି ସ୍ୱପ୍ନ, ଏହି ଅଭିଳାଷ ଆଜି ପର୍ଯ୍ୟନ୍ତ ପୂରଣ ହୋଇପାରି ନାହିଁ । ଏହାଠାରୁ ଲଜ୍ୟାକର ବିଷୟ ଆମ ପାଇଁ କଣ ଥାଇପାରେ । ଯଦି ଆମେ ଶ୍ରୀଘ୍ରାତିଶୀଘ୍ର ଏହା ରୂପାୟନ କରିପାରିବା, ତେବେ ମଙ୍ଗରାଜଙ୍କ ପ୍ରତି ପ୍ରକୃତ ଶ୍ରଦ୍ଧାଞ୍ଜଳୀ ହେଇପାରିବ ।

ଯଦୁମଣି ମଙ୍ଗରାଜ - ନାଁରେ କଣ କିମିଆ ଥିଲା କେଜାଣି- କାହିଁ କେତେଦୂରରୁ ଲୋକେ ଆସନ୍ତି ତାଙ୍କ ମୁଖନିର୍ଗତ ଭାଷଣ ଶୁଣିବାକୁ, ତାଙ୍କ ସହିତ ଟିକେ ମିଶିବାକୁ, ତାଙ୍କ ଆଶୀର୍ବାଦ ଲାଭ କରିବାକୁ । ପୁରୁଷ ସିଂହ ଥିଲେ ସେ । ଚେହେରାରେ ଯେପରି କଥାରେ ସେପରି କାମରେ ମଧ ସେପରି । ଅପ୍ରିୟ ସତ୍ୟକଥା କହୁଥିଲେ ସେ । ଦ୍ୱିତୀୟ ଯଦୁମଣିଙ୍କ ପରି ବ୍ୟଙ୍ଗୋକ୍ତି କରିପାରୁଥିଲେ । ଶତ୍ରୁକୁ ମଧ ବନ୍ଧୁତ୍ୱର ରଜ୍ଜୁରେ ବାନ୍ଧି ଦେଉଥିଲେ । ସବୁର ମୂଳରେ ଥିଲା ତାଙ୍କର ଦେଶ, ଜାତି ଓ ଭାଷା ପାଇଁ ମମତ୍ୱବୋଧ ।

ଖ୍ରୀ ୧୮୮୪ ମସିହା ଜାନୁଆରୀ ୧ ତାରିଖରେ ଏହି ମହାପୁରୁଷ ଭୂମିଷ୍ଠ ହୋଇଥିଲେ କଟକ ଜିଲ୍ଲାର ଲୁଣାନଦୀତଟବର୍ତ୍ତୀ କରିଲୋପାଟଣା ଗ୍ରାମରେ ପିତା ଭିକାରି

ଚରଣ ମଙ୍ଗରାଜଙ୍କ ଚତୁର୍ଥ ସନ୍ତାନ ଭାବେ । କନିକାର ଗଙ୍ଗାମାଇନର ସ୍କୁଲରେ ପଢୁଥିବା ବେଳେ ଖ୍ରୀ ୧୯୦୩ରେ ବ୍ରାହ୍ମଣୀନଦୀ ବନ୍ୟା ବିପନ୍ନ ଲୋକଙ୍କ ସେବା କରିବା ପାଇଁ ଗୋପବନ୍ଧୁ,ଗୋଦାବରୀଶ, ନୀଳକଣ୍ଠ ଆଦିଙ୍କ ସହ ଆଳି, କନିକା, ବନ୍ୟା ପ୍ରପୀଡିତ ଅଞ୍ଚଳକୁ ଯାଉଥିଲେ । ତୁଳସୀ ଦୁଇପତ୍ରରୁ ବାସିବା ପରି ସେ ପିଲାଟି ଦିନରୁ ବାସୁଥିଲେ । ସେ ଜଣେ ମେଧାବୀ ଛାତ୍ର ଥିଲେ । କଟକ ପ୍ୟାରୀମୋହନ ଏକାଡେମୀରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କଲେ । ରେଭେନ୍‌ସା କଲେଜ (ପାଟଣା ବିଶ୍ୱବିଦ୍ୟାଳୟ)ରୁ ଆଇ.ଏସ୍.ସି ଏବଂ ବିହାର ବିଦ୍ୟାପୀଠରୁ ଡିଷ୍ଟିସନ ସହ ବିଏସ୍ ସି ପାଶ୍ କଲେ । ରେଭେନ୍‌ସାରେ ଅଧ୍ୟୟନ କରୁଥିବା ସମୟରେ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଲେ । ଖ୍ରୀ ୧୯୨୧ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ସେ କାରା ଓ ଅର୍ଥଦଣ୍ଡରେ ଦଣ୍ଡିତ ହୋଇଥିଲେ । ଗାନ୍ଧିଜୀଙ୍କର ବାର୍ତ୍ତାକୁ ଲୋକମାନଙ୍କ ନିକଟରେ ପ୍ରଚାର କଲେ । ଖ୍ରୀ ୧୯୨୮ ଡିସେମ୍ବର ମାସରେ ପଣ୍ଡିତ ମୋତିଲାଲ ନେହେରୁଙ୍କ ସଭାପତିତ୍ୱରେ କଲିକତାରେ ଅନୁଷ୍ଠିତ ହେଉଥିବା ସର୍ବଦଳୀୟ ସମ୍ମିଳନୀରେ ମଙ୍ଗରାଜ ଯୋଗ ଦେଇଥିଲେ । ଏଠାରେ ଓଡିଶା ପ୍ରଦେଶ ଗଠନ ପ୍ରତି ଗୁରୁତ୍ୱ ଦିଆନଯିବାରୁ ସେ କ୍ଷୁବ୍ଧ ହୋଇ ଏକ ବିକ୍ଷୋଭ ଶୋଭାଯାତ୍ରା ବାହାର କଲେ । ସୁଭାଷ ବୋଷ ଓ ଜବାହରଲାଲ ନେହେରୁ ଯଦୁମଣିଙ୍କ ସହ ମିଳାମିଶା ସମାଧାନ କରିବା ପରେ ଯଦୁମଣି ଶାନ୍ତ ହୋଇଥିଲେ। ଏହା ଫଳରେ ଓଡିଶା ପ୍ରଶ୍ନ ସଭାର କାର୍ଯ୍ୟସୂଚୀରେ ସ୍ଥାନ ପାଇଥିଲେ । ଓଡିଶା ସୀମା ନିର୍ଦ୍ଧାରଣ ପାଇଁ ଆସିଥିବା ଓଡେନେଲ କମିଟି ଆଗରେ ସେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ବି ଅକାଟ୍ୟ ଦଲିଲ ସହ ଯୁକ୍ତି ଉପସ୍ଥାପନ କରିଥିଲେ ।

ଖ୍ରୀ ୧୯୩୦ରେ ଆଇନ ଅମାନ୍ୟ ଆନ୍ଦୋଳନ ତଥା ଲବଣ ସତ୍ୟାଗ୍ରହରେ ଯୋଗ ଦେଲେ । ଏହି ସମୟରେ କଟକ ସହରରେ କୌଣସି ସଭାରେ ଭାଷଣ ନ ଦେବା ପାଇଁ ଅଦମନୀୟ ନେତା ଯଦୁମଣିଙ୍କ ଉପରେ ୧୪୪ ଧାରା ଜାରି ହୋଇଥିଲା ।ଯଦୁମଣି ବାଲେଶ୍ୱରର ଇଞ୍ଚୁଡିଠାରେ ଲୁଣମାରି ହଜାରୀବାଗ୍ ଜେଲରେ କାରାବରଣ କଲେ । ଜେଲରେ ତାଙ୍କ ସହ ଡଃ ରାଜେନ୍ଦ୍ର ପ୍ରସାଦ ବନ୍ଦୀ ହୋଇଥିଲେ । ୧୯୩୪ରେ ମହାତ୍ମାଗାନ୍ଧୀଙ୍କୁ ନିକିରାଇ ଆଣି ବିରାଟସଭା କରାଇଥିଲେ । ଗାନ୍ଧିଜୀଙ୍କର ସେ ଅତୀବ ପ୍ରିୟ ଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ମଙ୍ଗରାଜଙ୍କ ଉଦ୍ୟମ ଅବିସ୍ମରଣୀୟ । ଉତ୍କଳ ସମ୍ମିଳନୀ ମଞ୍ଚରେ ମଂଜୁଷା, ତରଳା, ମେଦିନୀପୁର, ଷଢେଇକଳା, ଖରସୁଆଁ ଆଦି ଅଞ୍ଚଳକୁ ଓଡିଶାରେ ମିଶାଇବା ପାଇଁ ତାଙ୍କର ବକ୍ତୋକ୍ତି ଜନସାଧାରଣଙ୍କୁ ଶତଗୁଣରେ ଉତ୍ସାହିତ କରୁଥିଲା । ମଙ୍ଗରାଜ ମେଦିନୀପୁରଠାରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ସପକ୍ଷରେ ସଭା କରୁଥିବା ବେଳେ କୁଚକ୍ରୀମାନଙ୍କ ଢେଲାମାଡ ଖାଇ ଆହତ ହୋଇଥିଲେ ମଧ୍ୟ ସେଥିରୁ ବିରତ ହୋଇ ନ ଥିଲେ ।

ଖ୍ରୀ ୧୯୩୭ ବିଧାନସଭା ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଭାବେ ସେ ବହୁ ଅଧିକ ଭୋଟ ପାଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ପାରଳା ମହାରାଜଙ୍କ ମନ୍ତ୍ରୀମଣ୍ଡଳରେ ଅର୍ଥ ବିଭାଗର ପାର୍ଲାମେଣ୍ଟ ସେକ୍ରେଟାରୀ ଭାବେ କାର୍ଯ୍ୟଭାର ଗ୍ରହଣ କରି ସେ କର୍ମଦକ୍ଷତାର ପରାକାଷ୍ଠା ପ୍ରଦର୍ଶନ କରିଥିଲେ ।

ଖ୍ରୀ ୧୯୩୯ ରେ ସୁଭାଷ ବୋଷଙ୍କ ସହ ଯଦୁମଣିଙ୍କ ବନ୍ଧୁତା ସ୍ଥାପନ ହେଲା । ସେ ସୁଭାଷଙ୍କ ଗଠିତ ଓଡିଶା ଶାଖା ଫରୱାର୍ଡ ବ୍ଲକ ଦାୟିତ୍ୱ ରହିଲେ । କଟକ ମ୍ୟୁନିସପାଲଟି ପଡିଆରେ ମଙ୍ଗରାଜ ଓ ବୋଷଙ୍କ ଉଦ୍‌ବୋଧନ ସମବେତ ଜନତାଙ୍କ ହୃଦୟସ୍ପର୍ଶ କରିଥିଲା ।

ଭାରତ ସ୍ୱାଧୀନ ହେବା ପରେ ୧୯୫୧-୫୨ ପ୍ରଥମ ସାଧାରଣ ନିର୍ବାଚନରେ ସେ କେନ୍ଦ୍ରାପଡା ବିଧାନସଭା ନିର୍ବାଚନରେ ମରହଲୀରେ ହାରିଥିଲେ ମଧ ବିଜୟୀ କଂଗ୍ରେସ ପ୍ରାର୍ଥୀ ଦୀନବନ୍ଧୁ ସାହୁଙ୍କ ନିର୍ବାଚନର ବୈଧତା ବିରୋଧରେ ନିର୍ବାଚନ ମୋକଦ୍ଦମା କରି ଟ୍ରିବୁନାଲ୍ ଜିତିଥିଲେ । ଏହାପରେ ହୋଇଥିବା ଉପନିର୍ବାଚନରେ ସେ ଅଳ୍ପ ଭୋଟରେ ପରାଜିତ ହୋଇଥିଲେ ।

ଖ୍ରୀ ୧୯୫୬ ସୀମା ଆନ୍ଦୋଳନରେ ସେ ପ୍ରମୁଖ ଭୂମିକା ନିର୍ବାହ କରିଥିଲେ ।ଖ୍ରୀ ୧୯୫୭ରେ କଂଗ୍ରେସ ପ୍ରାର୍ଥୀ ରୂପେ ବଡ଼ଚଣା ନିର୍ବାଚନ ମଣ୍ଡଳୀରୁ ବିଧାୟକ ରୂପେ ନିର୍ବାଚିତ ହୋଇ ରାଜ୍ୟ ବିଧାନସଭାରେ ଉପବାଚସ୍ପତି ପଦବୀ ଅଳଙ୍କୃତ କଲେ । ବାଚସ୍ପତି ନୀଳକଣ୍ଠ ଦାସ ଅଧିକାଂଶ ସମୟ ଅସୁସ୍ଥତା ଯୋଗୁଁ ଅନୁପସ୍ଥିତ ରହୁଥିଲେ , ଫଳରେ ମଙ୍ଗରାଜ ବିଧାନସଭା ପରିଚାଳନା କରୁଥିଲେ ।

ପାଇକ ସଂସ୍କୃତିର ପୁନରୁଦ୍ଧାର କରି ଦେଶ ଓ ଜାତିକୁ ସମୃଦ୍ଧିର ଚରମ ସୋପାନରେ ଅଧିଷ୍ଠିତ କରାଇବାକୁ ସେ ଖଣ୍ଡାୟତ-କ୍ଷତ୍ରିୟ-ମହାସଭା ଗଠନ କରିଥିଲେ ଏବଂ ଏ ମୁଖପତ୍ର ନାୟକ ପ୍ରକାଶ କରିଥିଲେ ।

ମଙ୍ଗରାଜୀତାନ, ରସରାଜ, ମଳୁଆଜ ରୂପେ ପରିଚିତ ମଙ୍ଗରାଜ ଖ୍ରୀ ୧୯୬୪ ଏପ୍ରିଲ ୨ ତାରିଖରେ ଏକ ଧରାଧାମରୁ ବିଦାୟ ନେଲେ । ତାଙ୍କର କର୍ମମୟ ଜୀବନ ସର୍ବଦୈବ ଆମକୁ ପ୍ରେରଣା ଦେଉଥିବ ।



# ଜୀବନ୍ତ ଆଗ୍ନେୟଗିରି

ପ୍ରଫେସର୍ ଦ୍ଵିଦାନନ୍ଦ ରାୟ

ଆମ ଓଡିଶାର ବହୁତ ବ୍ୟକ୍ତି ଆଗ୍ନେୟଗିରିର ଅଗ୍ନି ଉଦ୍‌ଗୀରଣ ହୁଏତ ଦେଖି ନ ଥିବେ । କିନ୍ତୁ ଯେଉଁମାନେ ଯଦୁମଣି ମଙ୍ଗରାଜଙ୍କ ସମୟରେ ଲୋକ, ସେମାନେ ନିଜେ ଅନୁଭବ କରିଥିବେ ଯେ, ସ୍ୱର୍ଗତ ଯଦୁମଣି ମଙ୍ଗରାଜ ବାକ୍ ବିସ୍ଫୋରଣରେ ଥିଲେ ଜଣେ ମୂଲ୍ୟବୋଧ ଭିତ୍ତିକ ଜୀବନ୍ତ ଆଗ୍ନେୟଗିରି । ସେ ଯେଉଁ ଭାଷଣମାନ ଦେଉଥିଲେ, ତାହା ତାଙ୍କ କଣ୍ଠରୁ ଜାତ ହେଉ ନ ଥିଲା । ଏପରି କି ତାଙ୍କ ନାଭିରୁ ବି ଜାତ ହେଉ ନ ଥିଲା । ତାଙ୍କ ସର୍ବାଂଶରେ, ସର୍ବାଙ୍ଗରେ କେଉଁ ଏକ ଅଦ୍‌ଭୂତ ଲୋକରୁ ବାକ୍ ହୁଙ୍କାରମାନ ବୀର ରସରେ ରସାଣିତ ହୋଇ ପୂର୍ଣ୍ଣାଙ୍ଗ ମୂର୍ତ୍ତିରେ ଅବତରଣ କରୁଥିଲା । ଆଜି ସେଭଳି ବାଗ୍ମୀତା ଦେଖିବାକୁ ମିଳୁନାହିଁ । କାରଣ, କହିବାଟାକୁ ଲୋକମାନେ ଲେଖିବାଠାରୁ କ୍ଷଣସ୍ଥାୟୀ ଓ ଲଘୁ ବ୍ୟବହାର ବୋଲି ଧରି ନେଉଛନ୍ତି । କିନ୍ତୁ ଯଥାର୍ଥରେ କୁହାଯାଉଥିବା ଶବ୍ଦର ପ୍ରଭାବ ଯାହା ଲେଖା ଶବ୍ଦର ତଥାକଥିତ ଦୀର୍ଘସ୍ଥାୟୀତ୍ୱ ଥିଲେ ହେଁ, ତାହା ତାହାନୁହେଁ । ଥରେ ଜଣେ ପଚାରିଥିଲେ, କହିଲେ କଣ ହୁଏ । ? ତାହାର ଉତ୍ତରରେ ଜଣେ ବାଗ୍ମୀ କହିଥିଲେ, *କୁହାଯାଉଥିବା ଭାଷା ଯଦି ପ୍ରକୃତରେ କୁହାଯାଇଥାଏ, ତାହା ବ୍ରଜସୂଚୀ ଭଳି ପର୍ବତ ଭେଦ କରିଯିବ ଓ ଅନନ୍ତ କାଳ ପାଇଁ ବାୟୁମଣ୍ଡଳ ଏବଂ ଆକାଶକୁ ଧ୍ୱନିତ କରୁଥିବ ।*

ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କ ପବିତ୍ର ଜୟନ୍ତୀ ଦିବସରେ ଆଜି ଆମ ଦେଶବାସୀ ସ୍ମରଣ କରିବା ଉଚିତ ଯେ, ତାଙ୍କ ଭଳି ଦୀପ୍ତିମାନ , ନିର୍ଭୀକ, ଶକ୍ତିଶାଳୀ ବାଗ୍ମୀମାନଙ୍କର ବିଶେଷ କରି ଏ ଯୁଗରେ ପ୍ରୟୋଜନ ରହିଛି । ଯେଉଁଠି ଗଣତନ୍ତ୍ରର ସତ୍ତା ରହିଛି, ସେଠାରେ ସଚ୍ଚୋଟ ବାଗ୍ମୀତା ବଞ୍ଚି ରହିବାକୁ ବାଧ୍ୟ । ତେଣୁ ବାଗ୍ମୀତା ହେଉଛି ଗଣତନ୍ତ୍ରର ପରମ ଆୟୁଧ । ସେହି ଆୟୁଧଧାରୀ ଥିଲେ ବାଗ୍ମୀ ଯଦୁମଣି ମଙ୍ଗରାଜ । ତାଙ୍କୁ ଆମେପୁଷ୍ପାଞ୍ଜଳି ଅର୍ପଣ କରୁଛୁ ।



# ସ୍ୱାଭିମାନୀ ଓଡ଼ିଆ ଯଦୁମଣି

ସହଦେବ ସାହୁ

ନାରଦଙ୍କ ନାମ ନେଇ ଆମେ ଖାଣ୍ଟି ଜିନିଷ ଖୋଜିବାକୁ ଚେଷ୍ଟା କରୁ । ସେ କୁଆଡେ ଥରେ ଆମ ଦେଶକୁ ଆସି ଭାରତୀୟ କିଏ ଖୋଜି ଖୋଜି ପାଇ ନ ଥିଲେ । ପାଇଥିଲେ ମାଡ୍ରାସୀ, ମହାରାଷ୍ଟ୍ରୀ, ତେଲୁଗୁ, କନ୍ନଡ, ବଙ୍ଗାଳି ଭଳି ଲୋକ । ସମ୍ଭବତଃ ଓଡ଼ିଆ ପାଇ ନ ଥିଲେ । ସେତେବେଳେ ଓଡ଼ିଆଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶ ହୋଇ ନ ଥିଲା । ସ୍ୱତନ୍ତ୍ର ପ୍ରଦେଶ ହେଲାପରେ କଣ ଓଡ଼ିଆତ୍ୱ ହଜିଗଲା ? କାମ ପଡ଼ିଥିଲା ବେଳେ ନିଜକୁ ଓଡ଼ିଆ କହୁଥିବା ଲୋକ ବହୁତ ମିଳିବେ, କିନ୍ତୁ କାୟ ମନ ବାକ୍ୟରେ, ଅର୍ଥାତ୍ ସର୍ବୋତ ଭାବେ ଓଡ଼ିଆ ଜଣେ ମିଳିବା କଷ୍ଟ । ଓଡ଼ିଆଙ୍କ ପ୍ରତିନିଧିତ୍ୱ କରିବା ଲାଗି ତ ଓଡ଼ିଶ ବାହାରର ବ୍ୟକ୍ତିଙ୍କୁ ଆମନ୍ତ୍ରଣ କରି ଅଣାଯାଉଛି , ରାଜ୍ୟର ପ୍ରଭୁତ ଧନ ଖର୍ଚ୍ଚ କରାଯାଇ ସେମାନଙ୍କ ଭାବମୂର୍ତ୍ତି ତିଆରି କରାଯାଉଛି : ସତେ ଯେପରି ତାଙ୍କ ପରି ଲୋକଟିଏ ଓଡ଼ିଶାରେ ନାହିଁ ନ ଥିବ । ଓଡ଼ିଆଙ୍କ ସ୍ୱାର୍ଥର ଚିହ୍ନାରା ଓଡ଼ିଶାରେ ନାହାନ୍ତି । ଏଭଳି କରୁଥିବା ଦଳ ବା ନେତାମାନେ ଓଡ଼ିଆତ୍ୱକୁ, ଓଡ଼ିଆର ସ୍ୱାଭିମାନକୁ, ବଳି ଦେଉ ନାହାନ୍ତି କି ? କିନ୍ତୁ ନାରଦଙ୍କ ରିପୋର୍ଟ ଏତେ ନୈରାଶଜନକ ହେବ ନାହିଁ, ୧୯୬୪ ପର୍ଯ୍ୟନ୍ତ ଜଣେ ଖାଣ୍ଟି ଓଡ଼ିଆ ଦେଖିଥିଲେ ବୋଲି ସେ କହିବେ ଏବଂ ତାଙ୍କ ନାଁ ଥିଲା ଯଦୁମଣି ମଙ୍ଗରାଜ ।

ଓଡ଼ିଆମାନଙ୍କ ସ୍ୱତନ୍ତ୍ର ପ୍ରଦେଶ ହେବା ପୂର୍ବରୁ ସହଜେ ତ ସେ ଓଡ଼ିଆ ଭାଷୀ ଅଞ୍ଚଳର ମିଶ୍ରଣ ଆନ୍ଦୋଳନରେ ଝାସ ଦେଇଥିଲେ । ସେ କ୍ଷେତ୍ରରେ ସେ ତାର ବନ୍ଧୁ ବାଛ ବିଚାର କରୁ ନ ଥିଲେ । ଜାତୀୟ ଆନ୍ଦୋଳନରେ ସତ୍ୟାଗ୍ରହୀ ଯୋଗାଡ଼ କରିଥିବା କାଳରେ ସେ ନିଜ ଶ୍ୱଶୁରଙ୍କୁ ବାଧା ଦେଉଥିଲେ । ତାଙ୍କ ଶ୍ୱଶୁର ରାଧାଶ୍ୟାମବାବୁ କେନ୍ଦ୍ରାପଡ଼ା କଚେରୀରେ ମୁକ୍ତାର ଭାବେ କାମ କରୁଥିଲେ, ତାଙ୍କର କଚେରୀ ଯିବା ବାଟରେ ଅବରୋଧ କରିଥିଲେ : ଯୁବକମାନେ ଉଚ୍ଚସ୍ୱରରେ ତାଙ୍କ ସାଙ୍ଗରେ ଗାଉଥିଲେ -

ମୁକ୍ତର ବାବୁ ଙ୍କରେ ଜୁହାର
ଆଉ ନ ଯାଆନ୍ତୁ କଚେରି ଘର ।

୧୯୬୫ରୁ ଇଷ୍ଟ ଇଣ୍ଡିଆ କମ୍ପାନୀ ପାଇଥିବା ଉଇର ସରକାର ଦେଓ୍ୱାନୀରେ ଯେଉଁ ବଙ୍ଗ ବିହାର ଓଡିଶା ଥିଲା, ତହିଁର ଓଡିଶା ମଧ୍ୟରେ ମେଦିନୀପୁର ଅଞ୍ଚଳ ଥିଲା । ୧୮୭୦ ଦଶକର ଡାକ ବିଭାଗର ପୁନର୍ଗଠନରେ କଟକ ଡିଭିଜନ ଅଧୀନରେ ମେଦିନୀପୁର ଥିଲା । ମୟୂରଭଞ୍ଜ ରାଜ୍ୟରେ ଅନେକ ମେଦିନିପୁରଂ ବାସୀ କର୍ମଚାରୀ ଥିଲେ । ସେ କାଳରେ ଉକ୍ତ କର୍ମଚାରୀମାନେ ସେମାନଙ୍କ ପରିବାରବର୍ଗଙ୍କୁ ଯେଉଁ ଟଙ୍କା ପଠାଉଥିଲେ, ତାହା ଓଡିଆ ମନି ଅର୍ଡ଼ର ଫର୍ମରେ ଯାଉଥିଲା ଏବଂ ପ୍ରାପକ ଓଡିଆରେ ପ୍ରାପ୍ତି ସ୍ୱୀକାର କରୁଥିଲା । ସେ ଭଳି ଓଡିଆ ଅଞ୍ଚଳ ସ୍ୱତନ୍ତ୍ର ପ୍ରଦେଶର ଅନ୍ତର୍ଭୁକ୍ତ ନ ହେବା ଲଜ୍ଜାର ବିଷୟ । ଯଦୁମଣି ମଙ୍ଗରାଜ ଏଥିଲାଗି ମେଦିନୀପୁର ଯାଇ ଲୋକଙ୍କୁ ମତାଉଥିଲେ । ଆନ୍ଦୋଳନକୁ ଭଣ୍ଡୁର କରିବାକୁ ଚାହୁଁଥିବା ଲୋକଙ୍କ ଆକ୍ରମଣରେ ସେ ବେଶ୍ ଆହତ ହୋଇଥିଲେ । ଭାଷା ଆନ୍ଦୋଳନ ସମୟରେ ମଧ ମେଦିନୀପୁର, ଷଡେଇକଳା ଭଳି ବିଚ୍ଛିନ୍ନ ଓଡିଆଭାଷୀ ଅଞ୍ଚଳର ମିଶ୍ରଣ ଲାଗି ଦାବି କରି ଭାଷଣ ଦେବାବେଳେ ସେ ଅଞ୍ଚଳରେ ଅଣଓଡିଆଙ୍କ ଆକ୍ରମଣର ଶିକାର ହୋଇଛନ୍ତି ।

ଆଜିକାଲି କେବଳ ଧନ ଲୋଭରେ ଲୋକେ ନେତୃତ୍ୱ ନେଉଛନ୍ତି, ଅନ୍ୟମାନଙ୍କୁ ଉସୁକାଇ ଦେଇ ରାଜନୈତିକ ଫାଇଦା ଉଠାଇବାର ଚେଷ୍ଟାରେ ଅଛନ୍ତି । ଗୁଳି ଖାଇବା ବେଳକୁ ସେମାନେ ପଳାୟନ କରନ୍ତି, ନେତୃତ୍ୱ ନ ଥାଏ । ଦେଖଣାହାରୀମାନେ କଣ ଆନ୍ଦୋଳନ ଚଳାଇବେ ? କୁମ୍ଭୀର କାନ୍ଦଣାକାରୀ ଏ ନେତାମାନଙ୍କ ମତ : ନିଜେ ଭଲ ଥିଲେ ଦୁନିଆ ଭଲ । ଜାତି ବା ଭାଷା କଥା ଗୌଣ । ଯଦୁମଣି ମଙ୍ଗରାଜେ ବଞ୍ଚିଥିଲେ ଏଭଳି ପରିସ୍ଥିତି ଦେଖି ତାଙ୍କ ଆଖିରେ ଲୁହ ଗଡୁଥାଆନ୍ତା ।



# ଯଦୁମଣି ସ୍ମରଣେ

ସାରଦା ପ୍ରସାଦ ସାମନ୍ତରାୟ

ଯେଉଁ କେତେଜଣ ସ୍ୱାଧୀନଚେତା, ସଂଗ୍ରାମୀ ବ୍ୟକ୍ତିତ୍ୱ ଜନନୀ ଜନ୍ମଭୂମିର ପରାଧୀନତା ରୂପକ ଦୁଃଖରେ ଦୁଃଖାଭିଭୂତ ହୋଇ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ, ସେହି ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ସ୍ୱର୍ଗତ ଯଦୁମଣି ମଂଗରାଜ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଓଡିଶା ପ୍ରଦେଶର କଟକ ଜିଲ୍ଲା ଅନ୍ତର୍ଗତ ଏକ ଅଖ୍ୟାତ ପଲ୍ଲୀ କରିଲୋ ପାଟଣା ଗ୍ରାମରେ ୰ ଭିକାରୀ ଚରଣ ମଂଗରାଜଙ୍କ ପୁତ୍ର ଭାବରେ ୧୮୯୪ ମସିହା ଜାନୁୟାରୀ ପହିଲାରେ ଜନ୍ମଗ୍ରହଣ କରିଥିଲେ । ଏହି ନାମ ହୀନ ଅଖ୍ୟାତ ପଲ୍ଲୀରେ ଜନ୍ମ ହୋଇ ସେ ଯେ ଦିନେ ସମଗ୍ର ଓଡିଶା ମାଟିର ଜଣେ ବରେଣ୍ୟ ଜନନାୟକ ଭାବରେ ପରିଚିତ ହୋଇଯିବା ସଂଗେ ସଂଗେ ତାଙ୍କର ଖ୍ୟାତି ଚାରିଆଡେ ବ୍ୟାପିଯିବ, ଏକଥା କେହି ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲେ ।

ଛାତ୍ର ଜୀବନରୁ ତାଙ୍କର ସ୍ୱାଧୀନଚେତା ମନୋବୃତ୍ତିର ପରିଚୟ ମିଳିଥିଲା । ପ୍ରାଥମିକ ଶିକ୍ଷା ପରେ ଅବଶ୍ୟ ତାଙ୍କ ପିତା ତାଙ୍କୁ କୌଣସି ଜମିଦାରୀ ସିରସ୍ତାରେ ଗୁମାସ୍ତାଗିରି କରିବା ପାଇଁ ପ୍ରବର୍ତ୍ତାଇ ଥିଲେ । ମାତ୍ର ସ୍ୱାଧୀନଚେତା ଯଦୁମଣି ପିତାଙ୍କର ଏ ପ୍ରସ୍ତାବରେ ରାଜି ନ ହୋଇ ଉଚ୍ଚଶିକ୍ଷା ନିମନ୍ତେ କଟକର ପ୍ୟାରିମୋହନ ଏକାଡେମୀରେ ନିଜର ନାମ ଲେଖାଇଥିଲେ । ସେଠାରୁ ପ୍ରଥମ ଶ୍ରେଣୀରେ ମ୍ୟାଟ୍ରିକ୍ ପାଶ୍ କରି ସାରିବା ପରେ ପାଟଣା ବିଶ୍ୱବିଦ୍ୟାଳୟରୁ ଆଇ. ଏସ୍. ସି ଓ ଡିଷ୍ଟିଂସନ୍ ସହ ବି.ଏସ୍.ସି ପାଶ୍ କରି ନିଜର ଉଚ୍ଚଶିକ୍ଷା ନିମିତ୍ତ ଅଭିଳାଷକୁ ଚରିତାର୍ଥ କଲେ । ଏହି ଛାତ୍ରଜୀବନରୁ ହିଁ ଯଦୁମଣିଙ୍କ କାନରେ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନର ମନ୍ତ୍ର ଧ୍ୱନୀତ ହେଲା । ସାରା ଭାରତରେ ସ୍ୱାଧୀନତା ସଂଗ୍ରାମର ବହ୍ନି ପ୍ରଜ୍ୱଳିତ ହେଉଥିଲା ବେଳେ ଯୁବକ ଯଦୁମଣି ସୁଯୋଗକୁ ଅପେକ୍ଷା କରି ରହିଥିଲେ । ଖୁବ୍ ଶୀଘ୍ର ସେ ସୁଯୋଗ ମଧ୍ୟ ଆସିଗଲା । ଯେତେବେଳେ ମହାତ୍ମାଗାନ୍ଧୀ ସମଗ୍ର ଯୁବସମାଜକୁ ଆହ୍ୱାନ ଦେଲେ ଇଂରେଜ ଶକ୍ତି

ବିରୁଦ୍ଧରେ ସଂଗଠିତ ହେବା ପାଇଁ । ଏହି ସମୟରେ ଜାଲିଓ୍ୱାନା ବାଗ୍ ହତ୍ୟାକାଣ୍ଡର ଲୋମହର୍ଷଣକାରୀ ଦୃଶ୍ୟ ଯଦୁମଣିଙ୍କ ଯୁବକ ପ୍ରାଣରେ ପ୍ରଚଣ୍ଡ ଆଘାତ ଦେଲା। ଫଳରେ ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନକୁ ସେ ଜନ୍ମ ପ୍ରଦାନ କଲେ । ତାପରେ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ ଦାସ, ଡକ୍ଟର ମହତାବ ପ୍ରଭୃତିଙ୍କ ସହିତ ଭାରତୀୟ ଜାତୀୟ କଂଗ୍ରେସରେ ଅଂଶଗ୍ରହଣ କରିଥିଲେ । ୧୯୨୧ ମସିହା ମାର୍ଚ୍ଚ ମାସର ଭାରତୀୟ ଜାତୀୟ କଂଗ୍ରେସ ବୈଠକରେ ସର୍ବସମ୍ମତିକ୍ରମେ ଯଦୁମଣିଙ୍କୁ କେନ୍ଦ୍ରାପଡା ସବ୍‌ଡିଭିଜନର ସ୍ୱାଧୀନତା ସଂଗ୍ରାମୀ ସଂଗଠନର ସମସ୍ତ ଦାୟିତ୍ୱ ଦିଆଯାଇଥିଲା । ଏହି ୧୯୨୧ ମସିହାରେ ଦୁର୍ଦ୍ଧର୍ଷ ଇଂରେଜ ସରକାରଙ୍କ ଦ୍ୱାରା ଯଦୁମଣି ପ୍ରଥମ ଥର ପାଇଁ କାରାରୁଦ୍ଧ ହେଲେ । ଧୀରେ ଧୀରେ ରାଜନୀତି କ୍ଷେତ୍ରରେ ଯଦୁମଣିଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ସହିତ ସମଗ୍ର ଓଡିଶାରେ ତାଙ୍କର ଲୋକ ପ୍ରିୟତା ବଢିବାକୁ ଲାଗିଲା ।

ଛାତ୍ରଜୀବନରୁ ଯଦୁମଣି ନିଜକୁ ଜଣେ ସୁବକ୍ତାରୂପେ ପ୍ରତିଷ୍ଠିତ କରାଇଥିଲେ । ତାଙ୍କ ବକ୍ତବ୍ୟ ଅତି ସରଳ, ହାସ୍ୟୋଦ୍ଦୀପକ ତଥା ଶାଣିତ ଥିଲା । ତାଙ୍କର ଓଜସ୍ୱିନୀ ଭାଷଣ ଜନ ତାକୁ ମନ୍ତ୍ରମୁଗ୍ଧ କରିବା ସଂଗେ ସଂଗେ ଜନତାପ୍ରାଣରେ ବିପ୍ଳବର ଅଗ୍ନିସ୍ଫୁଲିଂଗ ସଂଯୋଗ କରୁଥିଲା । ହସେଇ, ରସେଇ ମରମ କଥାକୁ କହିବାରେ ଯଦୁମଣି ଏକ ରକମ ସିଦ୍ଧହସ୍ତ ଥିଲେ । ତାଙ୍କର ଏହି ହାସ୍ୟମିଶ୍ରିତ ଭାଷଣ ଯିଏ ଶୁଣିଛି, ସେ ହିଁ ତାଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱ ତଥା ମହାନୁଭବତାର ପରିଚୟ ପାଇଛି । ତାଙ୍କର ଏହି ଗୁଣର ଉତ୍ତରାଧିକାରୀ ଭାବରେ ତାଙ୍କ ର ଜ୍ୟେଷ୍ଠପୁତ୍ର ଶ୍ରୀଯୁକ୍ତ ବିଜୟ କେତନ ମଂଗରାଜଙ୍କୁ ଦେଖିବାକୁ ମିଳେ । ଭାରତ ପାକିସ୍ଥାନ ଯୁଦ୍ଧ ସମୟରେ କଟକ ଆକାଶ ବାଣୀ କେନ୍ଦ୍ରରୁ ଆଜିର ପ୍ରସଂଗ କାର୍ଯ୍ୟକ୍ରମରେ ବିଜୟବାବୁଙ୍କ କାର୍ଯ୍ୟକ୍ରମ ଉପସ୍ଥାପନ ଶୈଳୀ ଯେ କେହି ଶୁଣିଥିବ, ସେ ନିଶ୍ଚୟ ଯଦୁମଣିଙ୍କୁ ମନେ ପକାଉଥିବ । ଉପଯୁକ୍ତ ପିତାଙ୍କର ଦାୟାଦ ଭାବରେ ବିଜୟବାବୁ ବାପାଙ୍କର ଏହି ସୁଗୁଣକୁ ଧରି ରଖିବାରେ ସମର୍ଥ ହୋଇ ପାରିଥିଲେ ।

ଜୀବନକାଳ ମଧ୍ୟରେ ଯଦୁମଣି କେନ୍ଦ୍ରାପଡା ଲୋକାଲ ବୋର୍ଡର ସଭାପତି ଓ ମ୍ୟୁନିସିପାଲିଟିର କାଉନସିଲର ରୂପେ ଦାୟିତ୍ୱ ତୁଲାଇ ଥିଲେ । ୧୯୩୬ ମସିହାରେ ଜଣେ ଏମ୍.ଏଲ୍.ଏ ଭାବରେ ଓଡିଶା ବିଧାନ ସଭାକୁ ନିର୍ବାଚିତ ହେଲେ । ପାରଳା ମହାରାଜାଙ୍କ

ନେତୃତ୍ୱରେ ଗଠିତ ଓଡିଶା ମନ୍ତ୍ରୀ ମଣ୍ଡଳରେ। ଯଦୁମଣି ଅର୍ଥ ବିଭାଗର ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ରୂପେ ଦାୟିତ୍ୱ ତୁଲାଉ ଥିଲେ। ଦଳୀୟ ଅସନ୍ତୋଷ ଯୋଗୁଁ ଯଦିଓ ୧୯୩୬ ମସିହାରେ ଯଦୁମଣି କଂଗ୍ରେସକୁ ତ୍ୟାଗ କରିଥିଲେ ତଥାପି ୧୯୫୭ ମସିହାରେ ପୁଣି କଂଗ୍ରେସରେ ଯୋଗ ଦେଇ ବଡ଼ଚଣା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ରୂପେ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ। ଏହି ସମୟରେ ଓଡିଶା ବିଧାନ ସଭାର ଉପ-ବାଚସ୍ପତି ଆସନର ଗୁରୁଦାୟିତ୍ୱ ତାଙ୍କରି ଉପରେ ନ୍ୟସ୍ତ କରାଯାଇଥିଲା। ଉତ୍କଳ ଗୌରବ ମଧୁସୂଦନଙ୍କ ନେତୃତ୍ୱରେ ପରିଚାଳିତ ଉତ୍କଳ ସମ୍ମିଳନୀରେ ଜଣେ ସକ୍ରୀୟ ସଭ୍ୟ ଥିଲେ ଯଦୁମଣି। ପୁଣି ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ସେ ମେଦିନୀପୁର ଓ ଅନ୍ୟାନ୍ୟ ସ୍ଥାନ ମାନଙ୍କରେ ଜୀବନର କିଛି ବର୍ଷ ଅତିବାହିତ କରିଥିଲେ।

ଯଦୁମଣିଙ୍କର ପାରିବାରିକ ଜୀବନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା। ଯଦିଓ ସେ ତାଙ୍କ ଜୀବନର ଅଧିକାଂଶ ସମୟ କାରାଗାର ଗୃହରେ ଏବଂ ରାଜନୀତି କ୍ଷେତ୍ରରେ ବିନିଯୋଗ କରିଥିଲେ। ମାତ୍ର ଜୀବନର ଶେଷ ପର୍ଯ୍ୟାୟରେ ସେ ନିଜ ପରିବାର ପ୍ରତି ଖୁବ୍ ଯତ୍ନବାନ୍ ହୋଇ ଉଠିଥିଲେ। ତାଙ୍କର ପତ୍ନୀ ଜଣେ କର୍ମନିପୁଣା, ସୁଗୃହିଣୀ ହୋଇଥିବାରୁ ପାରିବାରିକ ଜୀବନରେ ସ୍ୱାମୀଙ୍କ ଅନୁପସ୍ଥିତିରେ ମଧ୍ୟ ପିଲାମାନଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରି ମଣିଷ ଭଳି ମଣିଷ କରି ପାରିଥିଲେ। ଚାରିଗୋଟି ପୁତ୍ର ଓ ଗୋଟିଏ କନ୍ୟା ସନ୍ତାନର ଜନକ ଯଦୁମଣି ଚାରି ପୁଅଙ୍କ ଅପେକ୍ଷା ଝିଅକୁ ଖୁବ୍ ଭଲ ପାଉଥିଲେ। ସେ କୌଣସି ସଭା ସମିତିକୁ ଗଲାବେଳେ ଝିଅକୁ ସାଥିରେ ନେଇ ଯାଉଥିଲେ। ତାଙ୍କର ଲକ୍ଷ୍ୟ ଥିଲା ଝିଅକୁ ରାଜନୀତି କ୍ଷେତ୍ରରେ ପ୍ରତିଷ୍ଠିତ କରାଇବା ପାଇଁ।

ଏହାଛଡା ଆଉ ଗୋଟିଏ ଛୋଟିଆ ଘଟଣାରୁ ଯଦୁମଣିଙ୍କର ମହାନ୍ ବ୍ୟକ୍ତିତ୍ୱ, ଉଦାରଚରିତ୍ର ଓ ମହାନୁଭବତାର ଯଥାର୍ଥ ପରିଚୟ ମିଳେ। କେନ୍ଦ୍ରାପଡାର ଦୀନବଂଧୁ ସାହୁଙ୍କ ସହିତ ଯଦୁମଣିଙ୍କର ଘନିଷ୍ଠ ବଂଧୁତା ଥିଲା। କୌଣସି କାରଣରୁ ଥରେ ଉଭୟ ବଂଧୁଙ୍କ ମଧ୍ୟରେ ସାମାନ୍ୟ ମନୋମାଳିନ୍ୟ ଘଟିଲା ଏହା ମଧ୍ୟରେ ଦୀବବଂଧୁ ବାବୁଙ୍କ ଝିଅର ବିବାହ ଉତ୍ସବ ଅନୁଷ୍ଠିତ ହେଲା। ଦୀନବଂଧୁଙ୍କ ତରଫରୁ ଜାଣି ଜାଣି ମଂଗରାଜଙ୍କୁ ନିମନ୍ତ୍ରଣ କରାଗଲା ନାହିଁ। ମାତ୍ର ଉଦାରଚରିତ୍ର ଯଦୁମଣି ଏକଥା ଜାଣିବା ପରେ ଗୋଟିଏ ମଂଜକଦଳୀ

ପତ୍ରକାଟି ନେଇ ବିବାହ ଭୋଜୀ ନିକଟରେ ଉପସ୍ଥିତ ହେଲେ । ଖାଇବାକୁ ବସିଥିବା ଲୋକମାନଙ୍କ ପାଖରେ ପତ୍ର ପକାଇ ବସିପଡି ଡାକ ଦେଲେ - ଦୀନବଂଧୁ କଣ ମରେ ଗଣ୍ଡେ ଖାଇବାକୁ ମିଳିବ ନା ନାହିଁ ? ତୁ ଏତେ ଲୋକଙ୍କୁ ନିମନ୍ତ୍ରଣ କଲୁ ଅଥଚ ମୁଁ ଏମିତି କେତେ ଖାଇ ଥାଆନ୍ତି କି ? ଦୀନବଂଧୁ ଏହା ଶୁଣି ତାଙ୍କ ପାଖକୁ ଦୌଡି ଆସି ଲୁହଭରା ଆଖି ଓ ବାଷ୍ପାକୁଳ କଣ୍ଠରେ ତାଙ୍କୁ କୁଣ୍ଢାଇ ଧରି ଠିଆ କରାଇଲେ । ଏହି ସାଧାରଣ ଘଟଣାରୁ ଯଦୁମଣିଙ୍କର ଉଦାର, ନମ୍ର ହୃଦୟର ପ୍ରମାଣ ମିଳେ । ଆତ୍ମଗର୍ବ, ଅହଂକାର ଏ ସବୁଠାରୁ ସେ ନିଜକୁ ବହୁତ ଦୂରେଇ ରଖୁଥିଲେ । ଖାଦ୍ୟ ପାନୀୟରେ ତାଙ୍କର କୌଣସି ବାଛବିଚାର ନ ଥିଲା । ଜାତି, ଅଜାତି, ଛୁଆ, ଅଛୁଆ, ଭେଦଭାବ ଠାରୁ ମଧ୍ୟ ସେ ଯଥେଷ୍ଟ ଦୂରରେ ରହୁଥିଲେ ।

ଅନେକ ମହତ୍ ଗୁଣର ଅଧିକାରୀ ଯଦୁମଣିଙ୍କର ଶେଷ ଜୀବନ କିନ୍ତୁ ସୁଖରେ ବିତିପାରି ନ ଥିଲା । ଜୀବନର ଶେଷ ନିଶ୍ୱାସ ସେ ଶାନ୍ତିରେ ନେଇ ପାରି ନଥିଲେ । ମହାତ୍ମାଗାନ୍ଧୀ, ମଧୁସୂଦନ ଓ ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ଏହି ନିର୍ଭୀକ ଜନନେତା, ହାସ୍ୟପ୍ରିୟ, ଅସାଧାରଣ ବାଗ୍ମୀ ଓ ନିସ୍ୱାର୍ଥପର ଜନ ସେବକଙ୍କର ମୃତ୍ୟୁ ହେଲା ଦୁରାରୋଗ୍ୟ କର୍କଟ ବ୍ୟାଧିରେ । ୧୯୬୪ ମସିହା ଏପ୍ରିଲ୍ ୨ ତାରିଖ ରାତି ଦୁଇଟା ସମୟରେ ।

ପ୍ରିୟ ଜନ୍ମଭୂମିକୁ ଛାଡି, ଅତିଆପଣାର ଓଡିଶା ମାଟିକୁ ଛାଡି ମହାମାନବ ଯଦୁମଣି ହଠାତ୍ ଶ୍ରୀରାମଚନ୍ଦ୍ର ଭଂଜ ମେଡିକାଲରୁ ସ୍ୱର୍ଗ ପଥର ଯାତ୍ରୀ ହୋଇଗଲେ । ଛାଡି ଗଲେ ଆମମାନଙ୍କ ପାଇଁ ଅନେକ ସ୍ମୃତିର ପାଖୁଡା ।



# କାଳଜୟୀ ମଙ୍ଗରାଜଙ୍କ ସ୍ମରଣେ

**ଦିପାଳି ଦାସ**

ଓଡିଶା ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ଅସାଧାରଣ ବାଗ୍ମୀ ତଥା ନିର୍ଭୀକ ଜନସେବକ ସ୍ୱର୍ଗତ ଯଦୁମଣି ମଙ୍ଗରାଜ ଆଜି ଇହଜଗତରେ ନାହାଁନ୍ତି ସତ କିନ୍ତୁ ତାଙ୍କର କର୍ମମୟ ଜୀବନ ଓ ଅସାଧାରଣ ବ୍ୟକ୍ତିତ୍ୱ ବିଷୟରେ ସ୍ମୃତିଚାରଣ କରିବା ତାଙ୍କର ସ୍ୱର୍ଗତ ଆତ୍ମାର ସଦ୍‌ଗତି ପାଇଁ ହେବ ଏକ ବିଶିଷ୍ଟ ନୈବେଦ୍ୟ । ତାଙ୍କର ନିର୍ଭୀକତା ସ୍ପଷ୍ଟବାଦିତା ଓ ନିରଳସ ଦେଶସେବା ପାଇଁ ଲୋକେ ଆଦରରେ ତାଙ୍କୁ ରୟାଲ୍ ଟାଇଗର୍ ଅଫ ଉତ୍କଳ ବୋଲି କହୁଥିଲେ, ଏହି କୃତି ପୁରୁଷ ୧୮୯୪ ମସିହା ଜାନୁୟାରୀ ପହିଲା ତାରିଖରେ ବର୍ତ୍ତମାନର କେନ୍ଦ୍ରପଡା ଜିଲ୍ଲା ଅନ୍ତର୍ଗତ କରିଲୋ ଗ୍ରାମରେ ଏକ ସଂଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଜଣେ ମେଧାବୀ ଛାତ୍ର ହିସାବରେ ତାଙ୍କର ବିଶେଷ ପରିଚୟ ଥିଲା, ସେ ପ୍ରଥମ ଶ୍ରେଣୀରେ ମେଟ୍ରିକ ପାସ କରି ବିଜ୍ଞାନ ଶ୍ରେଣୀରେ କଲେଜରେ ନାମ ଲେଖାଇଥିଲେ ଓ ସ୍ନାତକ ଡିଗ୍ରୀ କୃତିତ୍ୱର ସହିତ ହାସଲ କରିଥିଲେ, ଛାତ୍ର ଜୀବନରୁ ଅସାଧାରଣ ବାଗ୍ମୀତାର ପରିଚୟ ଦେଇଥିଲେ ସେ,ତଥା ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇ ଗାନ୍ଧିଜୀଙ୍କ ଆହ୍ୱାନରେ ୧୯୨୧ ମସିହା ଅସହଯୋଗ ଆନ୍ଦୋଳନ ଯୋଗ ଦେଇଥିଲେ । ତା ପରଠାରୁ ଦେଶ ସ୍ୱାଧିନତା ସଂଗ୍ରାମୀ ଭାବେ ନିଜକୁ ସଂପୂର୍ଣ୍ଣ ଉତ୍ସର୍ଗ କରିଦେଇ ସେ ବହୁବାର କାରାବରଣ କରିଥିଲେ । ୧୯୨୮ ମସିହା ଡିସେମ୍ବର ମାସରେ [illegible] ପତିତ୍ୱରେ କଲିକତାରେ ବସିଥିବା ଏକ ସର୍ବଦଳୀୟ ସମ୍ମିଳନୀରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପ୍ରସ୍ତାବକୁ ଏଡାଇ ଦିଆଯାଇଥିଲା, ସଭାପତି ମଧ୍ୟ ଓଡିଶା ପ୍ରତିନିଧିମାନଙ୍କ ପ୍ରତି ତାଚ୍ଛଲ୍ୟ ବ୍ୟବହାର କରିବାରୁ ଶ୍ରୀଯୁକ୍ତ ଯଦୁମଣି ଏହାର ପ୍ରତିବାଦ କରିବା ପାଇଁ ରାତାରାତି କଲିକତାରେ ଥିବା ଓଡିଆମାନଙ୍କୁ ସଂଗଠିତ କରି ଏକ ଶୋଭାଯାତ୍ରାରେ ସଭାମଣ୍ଡପ ଆଡକୁ ମାଡିଥିଲେ । ତତ୍କାଳୀନ କଂଗ୍ରେସ ନେତା ଜବାହାରଲାଲ ନେହେରୁ ଓ ସୁବାଷ ବୋଷ ଯଦୁମଣିଙ୍କ ସହ ମିଳାମିଶା କରି

ଏହାର ସମାଧାନ କରିଥିଲେ । ଫଳରେ ଓଡିଶା ପ୍ରଶ୍ନ ସଭାକାର୍ଯ୍ୟସୂଚୀରେ ସ୍ଥାନ ପାଇଲା । ଓଡିଶା ସୀମା ନିର୍ଦ୍ଧାରଣ ପାଇଁ ଆସିଥିବା ଓଡନେଲ କମିଟି ଆଗରେ ସେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ବହୁ ଅକାଟ୍ୟ ଦଲିଲ ଉପସ୍ଥାପନ କରିଥିଲେ । ଓଡିଶାରେ ଶୋଷିତ ଓ ନିଷ୍ପେଷିତ କୃଷକ ଶ୍ରମିକମାନଙ୍କର ରାଜା ଜମିଦାରମାନଙ୍କ ଅତ୍ୟାଚାରରୁ ମୁକ୍ତିପାଇଁ ସେ ବରାବର ଆନ୍ଦୋଳନ କରିଥିଲେ । ରାଜା ଜମିଦାର ମାନଙ୍କୁ ସେ ନିର୍ଭୀକ ଭାବରେ ବ୍ୟଙ୍ଗ ବିଦ୍ରୁପ କରୁଥିବାରୁ ସେମାନେ ଯଦୁମଣିଙ୍କୁ ମନରେ ଭୟ କରୁଥିଲେ । ୧୯୩୦ ମସିହାରେ ଆଇନ ଅମାନ୍ୟ ଆନ୍ଦୋଳନରେ କଂଗ୍ରେସ ତରଫରୁ ଇଂରେଜ ସରକାର ବିରୋଧରେ ଆନ୍ଦୋଳନ କରି ସେ କଂଗ୍ରେସ କର୍ମୀମାନଙ୍କ ସହିତ କାରାବରଣ କରିଥିଲେ । ସବୁ ପ୍ରକାର ସଭାରେ ଲୋକେ ତାଙ୍କର ଉପସ୍ଥିତିକୁ ଉତ୍କଣ୍ଠା ସହ ଅପେକ୍ଷା କରିଥାନ୍ତି । ତାଙ୍କ ଭାଷଣର ଶୈଳୀ ଓ ଅଙ୍ଗଭଙ୍ଗୀ ସ୍ୱତନ୍ତ୍ର ଓ ସ୍ୱଭାବସିଦ୍ଧ ଯାହାକୁ ମଙ୍ଗରାଜିୟାନ ମଧ୍ୟ କୁହାଯାଉଥିଲା, କିଛିକାଳ ସେ କେନ୍ଦ୍ରାପଡା ଲୋକାଲ ବୋର୍ଡ ଚେୟାରମ୍ୟାନ ହୋଇଥିଲେ । ୧୯୩୭ ମସିହା ବିଧାନସଭା ନିର୍ବାଚନରେ ସେ କଂଗ୍ରେସ ଦଳରୁ ପ୍ରାର୍ଥୀ ହୋଇ ତାଙ୍କର ବିରୋଧି ପ୍ରାର୍ଥୀ ଦେୱାନ ବାହାଦୂର ଲକ୍ଷ୍ମୀଧର ମହାନ୍ତିଙ୍କୁ ବହୁ ଅଧିକ ଭୋଟରେ ପରାସ୍ତ କରି ଓଡିଶା ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ ଓ କଂଗ୍ରେସ ଛାଡି ମନ୍ତ୍ରୀମଣ୍ଡଳରେ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ହୋଇଥିଲେ । କଂଗ୍ରେସ ସହିତ ମତ ଭେଦ ଯୋଗୁଁ ସୁବାଷ ଚନ୍ଦ୍ର ବୋଷ ଫରଓ୍ୱାର୍ଡ ବ୍ଲକ୍ ଗଢିଲେ । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଯଦୁମଣି ମଙ୍ଗରାଜ ଓ ଦିବାକର ପଟ୍ଟନାୟକ ଇତ୍ୟାଦି କଂଗ୍ରେସ ଛାଡି ସେଥିରେ ଯୋଗଦେଲେ । ବୋଷ ଉପଲବଧି କରିଥିଲେ ଅହିଂସା ଦ୍ୱାରା ଇଂରେଜ ସରକାରକୁ ହରାଇବା କଷ୍ଟକର, ତେଣୁ ସେ କ୍ରାନ୍ତିକାରୀ ପଦକ୍ଷେପ ନେବାପାଇଁ ଆଗେଇ ଗଲେ । ୧୯୪୧ ରୁ ୧୯୪୪ ମଧ୍ୟରେ ଓଡିଶାରେ ପାରଳା ମିଳିତ ମନ୍ତ୍ରୀମଣ୍ଡଳ ବେଳେ ସେ ଥିଲେ ଜଣେ ବିଧାୟକ, ୧୯୫୬ ମସିହାରେ ଓଡିଶାସୀମା ଆନ୍ଦୋଳନରେ ସେ ନେତୃତ୍ୱ ନେଇ ଥିଲେ । ପରବର୍ତ୍ତିକାଳରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଅନୁରୋଧକ୍ରମେ ୧୯୫୭ ମସିହାରେ ପୁଣି କଂଗ୍ରେସକୁ ଫେରି ବଡଚଣା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଓଡିଶା ବିଧାନ ସଭାରେ ଉପବାଚସ୍ପତି ହୋଇଥିଲେ, ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଯଦୁମଣି ବହୁ କଷ୍ଟ ସ୍ୱିକାର କରିଥିଲେ । ବିଚ୍ଛିନ୍ନ ଅଞ୍ଚଳରେ ଓଡିଆ ସଂସ୍କୃତି ଲୋପ

ପାଇଯାଇ ଥିଲା । ଓଡିଆମାନେ ନିଜକୁ ଓଡିଆ ବୋଲି ପରିଚୟ ଦେବାକୁ ଇଚ୍ଛ୍ୟାବୋଧ କରୁଥିଲେ । ଏହିପରି ଜଣେ ଓଡିଆ ବୀରଥିଲେ ବାରିଷ୍ଟର ବୀରେନ୍ଦ୍ର ସାସମଲ । ତାଙ୍କର ଏହି ଓଡିଆ ବିରୋଧୀ ଭାବଯୋଗୁଁ ବଙ୍ଗବାସୀ ତାଙ୍କୁ ଦେଶପ୍ରାଣ ଉପାଧିରେ ଭୂଷିତ କରିଥିଲେ । ଯଦୁମଣି ମେଦିନୀପୁରରେ ଓଡିଶା ମିଶ୍ରଣ ସପକ୍ଷରେ ପ୍ରଚାର କରୁଥିବା ବେଳେ ପ୍ରତିପକ୍ଷ ଗୁଣ୍ଡାମାନେ ତାଙ୍କୁ ଆକ୍ରମଣ କରି ମୁଣ୍ଡ ଫଟାଇ ଦେଇଥିଲେ । ତଥାପି ଯଦୁମଣି ଓହରି ଯାଇ ନ ଥିଲେ । ୧୯୫୫ ସାଲରେ ଷଢେଇକଳା ଓ ଖରସୁଆଁ ଆନ୍ଦୋଳନରେ ଯଦୁମଣିଙ୍କର ନେତୃତ୍ୱ ଚିର ସ୍ମରଣୀୟ । ୧୯୫୫ ମସିହା ନଭେମ୍ବର ମାସରେ ସାର ସୟଦ ଫଜଲ ଅଲ୍ଲୀଙ୍କ ନେତୃତ୍ୱରେ ଗଠିତ ରାଜ୍ୟ ପୁନର୍ଗଠନ କମିଶନରେ ବିବରଣୀ ପ୍ରକାଶନରେ ଓଡିଶା ପ୍ରତି ଅନ୍ୟାୟ କରାଯାଇଥିବା ଉପଲବ୍ଧି କରି କେତେକ ଛାତ୍ର ବିକ୍ଷୋଭ ପ୍ରଦର୍ଶନ କରିଥିଲେ ଓ କଟକ ବେତାର କେନ୍ଦ୍ରକୁ ଘେରଉ କରିବା ଯୋଗୁଁ ଗୁଳିକାଣ୍ଡ ହୋଇଥିଲା, ଯେଉଁଥିରେ ସୁନୀଲ ଦେ ନାମକ ଜଣେ ଯୁବକ ପ୍ରାଣବଳୀ ଦେଇଥିଲେ । ମଙ୍ଗରାଜ ଏହି ଆନ୍ଦୋଳନ ବେଳେ ବିବରଣୀ ଦେଇ ଓଡିଶା ପ୍ରତି ହୋଇଥିବା ଅବିଚାର ସମ୍ବନ୍ଧରେ କଟକ ମ୍ୟୁନିସିପାଲିଟି ପଡିଆରେ ଏକ ଚିତ୍ତାକର୍ଷକ ଭାଷଣ ଦେଇ, ଶ୍ରୋତୃବର୍ଗଙ୍କୁ ମନ୍ତ୍ର ମୁଗ୍ଧ କରିଦେଇଥିଲେ । ଦେଶପାଇଁ ସର୍ବସ୍ୱ ତ୍ୟାଗ କରିବା ତାଙ୍କ ଜୀବନରେ ଲକ୍ଷ୍ୟଥିଲା । ସେ ଥିଲେ ଜଣେ ନିର୍ଭୀକ ନେତା ଓ ପ୍ରଚଣ୍ଡ ଦେଶପ୍ରେମୀ, କାପୁରୁଷପରି ଜୀବନ ଯାପନ କରିବାକୁ ସେ ଘୃଣା କରୁଥିଲେ । ସେ ଥିଲେ ତରୁଣ ସମାଜର ପ୍ରେରଣା ଓ ଉତ୍ସାହର ବତୀଖୁଣ୍ଟ । ଏହି ମହାନ ଆତ୍ମା ୧୯୬୪ ମସିହା ଏପ୍ରିଲ ୨ ତାରିଖ ଦିନ ଇହଲୀଳା ସମ୍ବରଣ କରିଥିଲେ । କିନ୍ତୁ ରଖିଯାଇଥିଲେ ଏକ ଅଲୌକିକ ପ୍ରତିଭା । ଯାହା କାଳେ କାଳେ ଓଡ଼ିଶାକୁ ପ୍ରେରଣା ଦେଇଚାଲିଥିବ ଦୁର୍ଦ୍ଧର୍ଷ ହୁଅ, ନିର୍ଭୀକ ହୁଅ, ନିଜେ ବଡ଼ ହୁଅ, ଅନ୍ୟକୁ ଭଲକରି ଗଢି ଥୁଅ, ତୁମେ ପଙ୍ଗୁ ହେଲେ ସମଗ୍ର ଦେଶ ପଙ୍ଗୁ ପାଲଟି ଯିବ ।



# କିଏ ? ମହାନ୍ ବିପ୍ଳବୀ ଯଦୁମଣୀ ମଂଗରାଜ

ନକୁଳ ମଲ୍ଲିକ୍

ସେ, ମଣିଷ ସମାଜ ପାଇଁ ସଂପୂର୍ଣ୍ଣ ବିପ୍ଳବର ଏକ ଝଲକ୍ । ଆଉ କାହା ପାଇଁ ସେ, କଣ ହୋଇଥିବେ । ମୁଁ ଜାଣିବାରେ ସେ ସବୁଦିନ ସମସ୍ତଙ୍କ ପାଇଁ ସବୁ ହୋଇ ରହିଛନ୍ତି ।

ତାଙ୍କରି ବ୍ୟକ୍ତିତ୍ୱ, ତାଙ୍କରି ବାଗ୍ମୀତା, ତାଙ୍କରି କେନ୍ଦ୍ରାପଡା ରସା-ବଳୀର ଅମୃତ ଧାରାର ଶବ୍ଦ ମାଧୁରୀ ଏବଂ ବାକ୍ ଚାତୁରୀର ଛଇଛଟକ୍‌ରେ କେବଳ ସେ ହିଁ ଆବାଳ ବୃଦ୍ଧବନିତା, ଜ୍ଞାନୀ, ବିଜ୍ଞାନୀ, ଅଜ୍ଞାନୀ ସମସ୍ତଙ୍କୁ ଏକତ୍ରିତ- ବିମୋହିତ- ରସାଇ-ହସାଇ ମନସ୍ତତ୍ୱକୁ ଭସାଇ ଦେଇ ଯାଇଛନ୍ତି - ଠିକ୍ ମଥୁରାରେ ଶ୍ରୀକୃଷ୍ଣ ଚନ୍ଦ୍ର ଆର୍ବିଭୂତ। ବିଭିନ୍ନ ଖେଳ କୌତୁକ, ଢ଼ଗ ଢ଼ମାଳି ମାଧମରେ ପ୍ରକୃତ ଗଣତନ୍ତ୍ରର ରୀତି, ନୀତି ଓ ପଦ୍ଧତିକୁ ସାବ୍ୟସ୍ତ କରି,ମଣିଷ ସମାଜରେ ଏକ ବିପ୍ଳବାତ୍ମକ ପରିବର୍ତ୍ତନ ସଂଗଠିତ କରିବା ଲକ୍ଷରେ କାର୍ଯ୍ୟ କରିଛନ୍ତି । ଏହି ମହାନ୍ ଲକ୍ଷର ସାଧନ ପାଇଁ ସେ ଆମ ଚର୍ମ୍ମ-ଆକ୍ଷିରେ କିଛି ଦିନ ଦୃଶ୍ୟମାନ ଥିଲେ । ଏ ଧରାରୁ ସେ ଚାଲିଯାଇଛନ୍ତି ବୋଲି ଯାହା କୁହାଯାଉଛି ତାହା ଠିକ୍ ନୁହେଁ । ତାଙ୍କପରି ଜଣେ ସମସ୍ତ ନାହିଁ ନାହିଁତ ର ସାର୍ଥକତା ସେ ଅର୍ଜନ କରି ନେଇ ନିଜସ୍ୱ ବିପ୍ଳବାତ୍ମକ- ଆତ୍ମ ପରିଚୟଟିକୁ ସାବ୍ୟସ୍ତ କରିବା ପାଇଁ ଏ ଜଗନ୍ନାଥ ଦେଶର ରାଜନୀତି କ୍ଷେତ୍ରରେ, ମାନବ ଦର୍ଶନର ସାମାଜିକ କ୍ଷେତ୍ରରେ ତଥା ନିଖିଳ ଉତ୍କଳ ଖଣ୍ଡାୟତ- କ୍ଷତ୍ରିୟ ମହା ସମାଜରେ ସୁସୁବାସିତ ପୁଷ୍ପ ଗନ୍ଧସମ ସ୍ୱତଃ ପ୍ରସାରିତ.ପ୍ରଚାରିତ ଓ ପ୍ରତିଭାତ ହୋଇ ଯାଇ ସାରିଛନ୍ତି । ତାଙ୍କ ନାମ ଯଦୁମଣୀ ମଂଗରାଜ ର ସାର୍ଥକର୍ତା ସେ ପ୍ରତିପାଦନ କରି ଦେଇଛନ୍ତି । ମୁଁ କିନ୍ତୁ ତାଙ୍କୁ କେବଳ ଜଣେ ବିପ୍ଳବୀ ବୋଲି ଅଦ୍ୟାବଧି ଜ୍ଞାନ କରି ଆସୁଛି । ସୁବାସ ବୋଷଙ୍କୁ ଯଦି ବିପ୍ଳବୀ ଆଖ୍ୟା ଦିଆଯାଏ, ତୁଳନାତ୍ମକ ଦୃଷ୍ଟିରେ ମଂଗରାଜଙ୍କ ବିପ୍ଳବର ମହନତା ଓ ମହନୀୟତା ବିଚାର ପରିସରଭୁକ୍ତ । ସେହିପରି ଏପରି ଜଣେ ଯୋଗଜନ୍ମା - ବିପ୍ଳବୀ, ବାସ୍ତବ-ଜାତୀୟବାଦୀ-ପ୍ରୀତିବୋଳା-ଜନନେତା, ବକ୍ତା ଏବଂ

ଦ୍ରଷ୍ଟା ହୁଏତ ଗୋପବଂଧୁଙ୍କ ତୁଳନାରେ ବହୁ ଉର୍ଦ୍ଧରେ । ତାଙ୍କ ସ୍ପଷ୍ଟବାଦୀତା, ନିର୍ଭୀକତା ଏବଂ ପ୍ରତ୍ୟୁତ୍ପନ୍ନମତି ଦୂରଦୃଷ୍ଟ ସଂପନ୍ନ ବିଚାର ବୁଦ୍ଧିରେ ଓଡିଶା କାହିଁକି କେବଳ ମହାତ୍ମାଗାନ୍ଧୀଙ୍କ ବ୍ୟତିତ ଆମ ଦେଶରେ ସର୍ବ-ଅନନ୍ୟ । ମୁଁ ତାଙ୍କର ପ୍ରଥମ ଦର୍ଶନ ଲାଭ କରିଛି ୧୯୪୫ ମସିହାରେ ଯେତେବେଳ, ପଟାମୁଣ୍ଡାର ଏମ୍.ଏନ୍. ହାଇସ୍କୁଲର ୯ମ ଶ୍ରେଣୀ ଛାତ୍ର ।

୧୯୪୨ ମସିହାରେ ଅଗଷ୍ଟ ବିପ୍ଳବ ସମୟରେ ୬ଷ୍ଠ ଶ୍ରେଣୀରୁ ପଟାମୁଣ୍ଡାର ଓ କେନ୍ଦ୍ରାପଡ଼ା ଥାନାର ବହୁ ବିଶିଷ୍ଟ କଂଗ୍ରେସ ନେତାଙ୍କ ସଂସର୍ଗରେ ମୁଁ ସାମିଲ ହୋଇ ଯାଇଥାଏ । ମାହାତ୍ମାଗାନ୍ଧୀଙ୍କ ରାମରାଜ୍ୟ, ଗ୍ରାମ ସ୍ୱରାଜ୍ୟ, ଛୁଆଁଛତ୍ ଓ ନିଶା ନିବାରଣ ଡାକରା ସହ ଗଠନ ମୂଳକ କାର୍ଯ୍ୟକ୍ରମ ଗୁଡିକୁ ରୂପାୟୀତ କରିବା ପାଇଁ, ଆମ ଗ୍ରାମ ଅମୃତମଣୋହୀରେ ସୁବାଷ ପଲ୍ଲୀ ମଂଗଳ ଗଠନ କରି ଓ କରାଇ ଗାଁ ପ୍ରାଇମେରୀ ସ୍କୁଲର ପରିଚାଳନା, ଲାଇବ୍ରେରୀ - କ୍ଲବ-ଫୁଟବଲ ଖେଳ, ସୁବାଷ-ସେନାବାହିନୀ ଯୁବକ ସଂଘ ଗଠନ କରି ସମସ୍ତ ଗ୍ରାମବାସୀଙ୍କ ସହଯୋଗରେ କାର୍ଯ୍ୟ କରୁଥାଏ । ୧୯୬୪ ମସିହାରେ କେନ୍ଦୁପାଟଣା ଚରଖା କେନ୍ଦ୍ରରୁ ବାରଟି ଟକିଲି, ତିନୋଟି କିଶାନ୍ ଚରଖା ଓ ଗୋଟିଏ ବାଉଁ ଅଗଟ ନେଇ ଆସିଲି, ସ୍ୱରାଜ୍ୟ-ଆଶ୍ରମରେ ସୂତାକଟା କାର୍ଯ୍ୟ ଚାଲୁଥାଏ । ଛୁଆଁ ଛୀତ୍‌ବାରଣ ନିଷେଧ ବା ନିରାକରଣ କାର୍ଯ୍ୟ ପାଇଁ ଆମ ଗ୍ରାମ ନିକଟସ୍ଥ, ଅଣରା, ବଲୁରିଆ, ନୂଆପଡା, ଫୁଲ ପାଟଣା ପ୍ରଭୃତି ଗ୍ରାମବାସୀମାନେ ଆମକୁ ଏକ ଘରିକିଆ, ବାସନ୍ଦ କରିଥାଆନ୍ତି । ଏଇ ସମୟରେ ବଲୁରିଆ -ଅମୃତମଣୋହୀ ଦୋସମ୍ଭାଳାରେ ଏକ ବିରାଟ ପଡ଼ିଆରେ ବହୁ ଯାକ୍- ଜମକ୍‌ରେ ଖଣ୍ଡାୟତମାନଙ୍କର ସାଧାରଣ ସଭା । ଛୁଆଁ ଛୁତ-ନିବାରଣ ସହ ବହୁ ଆନୁସଂଗଳ ସାମାଜିକ-ସମସ୍ୟା ଗୁଡିକର ବିଚାର, ଦୃଷ୍ଟିରୁ , ବିଶେଷତଃ ଆମ ଗ୍ରାମ ବିରୋଧରେ ଏ ସଭା ଆୟୋଜିତ ହୋଇଥାଏ ! ଯଦିଓ ଖଣ୍ଡାୟତ- କ୍ଷତ୍ରିୟ ମହାସଭାର ଅନ୍ୟାନ୍ୟ ମୁଖ୍ୟ କାର୍ଯ୍ୟକ୍ରମ ଥାଏ । ଯଦୁମଣୀ ମଂଗରାଜ ଆସିବେ । ଗାଁ ଚାରିପଟେ ଉଦ୍‌ବେଳନ ହୁଲ୍‌ହୁଲ୍, ହାଲ୍ଲା, ଗୁଲ୍ଲା ଓ ହୁରି ପଡୁଛି । ବିଶେଷ ନିମନ୍ତ୍ରଣକ୍ରମେ ଆମ୍ଭେ ଗ୍ରାମବାସୀମାନେ ସଭାରେ ଯୋଗ ଦେବାପାଇଁ । ଦୁଇଜଣ ବକ୍ତାଙ୍କ ପରେ ମୁଁ ବକ୍ତୃତା ଦେବାବେଳେ ଜଣେ ଦୁଇଜଣଙ୍କ ଆପତ୍ତି ଉପରେ ହଠାତ୍ ମଂଗରାଜଜୀ

କହି ପକାଇଲେ ନାଁ, ନାଁ, ସେ ଛୁଆ-ପିଲାଟିକୁ କହିବାକୁ ଦିଅ । ଆଉ ସେ କଅଣ କହୁଛି ତାକୁ ଠିକ୍‌ଭାବରେ ଶୁଣ । ବାସ ଏତିକିରେ ସଭାରେ ମୁଁ ଗାନ୍ଧୀ ମହାତ୍ମାଙ୍କ ଛୁଆ ଛୁତ୍ ନିବାରଣ, ଗ୍ରାମ ସ୍ୱରାଜ୍ୟ ପାଇଁ ସମିତି ଗଠନ ପ୍ରଭୃତ ବିଷୟରେ କହିଥିଲି ।

ତତ୍‌ପରେ ୧୯୫୫ ମସିହାରେ ଐତିହାସିକ ସୀମାଆନ୍ଦୋଳନ - ଖରସୁଆ-ସରେଇକଳା ବିଚ୍ଛିନ୍ନାଂଚଳ ଦାବି ସମୟରେ ସେ କ୍ଷତ୍ରୀୟ ପ୍ରବର- ବିପ୍ଳବ ବୀରଙ୍କର ଦେଶମାତୃକା ପ୍ରୀତି ଭାବରେ ତାଣ୍ଡବ ନୃତ୍ୟର ଭାବଭଂଗୀ ଓ କାର୍ଯ୍ୟକଳାପର ମୁଁ ସମ୍ୟକ ପ୍ରତ୍ୟେକ୍ଷଦର୍ଶୀ । ମୁଁ ମଧ ସେଦିନର ଆନ୍ଦୋଳନର ବିରାଟ ପ୍ରୋସେସନ୍‌ରେ ସାମିଲ ହୋଇଥାଏ । ଆମେ ସମସ୍ତେ କଟକସ୍ଥିତ- ସେବକାର ଆକାଶବାଣୀ କେନ୍ଦ୍ରକୁ ଯାଉଥାଉ । ସମ୍ମାନୀୟା ମାଳତୀ ଚୌଧୁରୀଙ୍କୁ ସର୍ବାଗ୍ରେ ଗେଟ୍ ଭିତରକୁ ଭିଡ଼ିନେଇ ଏଣେ ନେପାଳ-ମିଲିଟାରୀଙ୍କ-ଥ୍ରୀ-ନଟ -ଥ୍ରୀ ବଂନ୍ଧୁକ ଗୁଳି ଛୁଟିଲା । ଆମ୍ଭେମାନେ ଛିନ୍ ଛତ୍ର ଏଣେତେଣେ ଦୌଡ଼ିଲୁ । ନବକୃଷ୍ଣ ଚୌଧୁରୀ ସେତେବେଳେ ମୁଖ୍ୟମନ୍ତ୍ରୀ, ରାଧାନାଥ ରଥ ବିତ୍ତ ମନ୍ତ୍ରୀ, ଦିନବଂଧୁ ସାହୁ ଆଇନ ମନ୍ତ୍ରୀ । ଆମ ପ୍ରୋସେସନରେ ଥିବା ସୁନିଲ୍ ଦେ ଏବଂ ପୁରୀର ବେଂଗପାଣିଆର ମୁଣ୍ଡଖପୁରୀ ଉଡ଼ା-ଗୁଳି-ମରା ଦୁଇଜଣଙ୍କ ମୃତ୍ୟୁ ଓ ବହୁଲୋକଙ୍କ ଖୁନ୍ ଖରାପ ପାଇଁ ସାରା ରାଜ୍ୟ ତମାମ୍ ଚହଳ ପଡିଗଲା । ରାସ୍ତା ଘାଟରେ ବଂଧୁକଧାରି ମିଲିଟାରୀ ଭଣ ଭଣ ସଣ ସଣ । ମନ୍ତ୍ରୀମାନଙ୍କୁ ଗାଦି ଛାଡିବାକୁ ତୀବ୍ର ଦାବୀ । ତା ପରଦିନ ରାଧାନାଥ ରଥଙ୍କ ପ୍ରହରୀଜଗଜୀ - ସମାଜ କାର୍ଯ୍ୟାଳୟ-ବାସ ଭବନ ଆଗରେ ହଜାର ହଜାର ସଂଖ୍ୟାରେ ଆମ୍ଭେମାନେ ଗାଦି-ଛାଡ-ଜୁଲମ୍ ଡ଼ାବରା ଦେଉଥାଉ । କିନ୍ତୁ ସେଦିନ ମନ୍ତ୍ରୀ ରାଧାନାଥ ବାବୁ ଉପର ତାଲାରେ ରହି ଆମ୍ଭମାନଙ୍କ ଉପରେ ନିର୍ଦ୍ଧୁମ ଜଳ ବର୍ଷଣ କରାଗଲା ଏବଂ ପରେ ମିଲିଟାରୀ ଫୌଜଙ୍କ ଦ୍ୱାରା ହୁଡୁତାଡ଼ ଦିଆଗଲା । ଏ ଅଦ୍‌ଭୁତ ଏବଂ ଅଭୂତପୂର୍ବ ସ୍ୱତଃସ୍ଫୁର୍ତ୍ତ ବିପ୍ଳବାତ୍ମକ ଆନ୍ଦୋଳନର ସୂତ୍ରଧର, ବକ୍ତା ଏବଂ କର୍ତ୍ତାର ପୁରୋଭାଗରେ ସର୍ବଥା ଥିଲେ କେବଳ ଜଣେ ଶକ୍ତିଧର ବିପ୍ଳବୀ ସେ ହେଉଛନ୍ତି ଯଦୁମଣୀ ମଂଗରାଜ ଯିଏ କି ସେଦିନ ସେ ନିଜକୁ ନିଜେ ଓଡିଶାର ଗଭର୍ଣ୍ଣର ଭାବେ ବିଭୂଷିତ କରି, ବାଂକୁଲା ବାଡିଟିଏ ଧରି ହୁକୁମ୍‌ନାମା ଜାହିର୍ କରୁଥିଲେ । ସେ ବେଳର କଂଗ୍ରେସୀ ଲୋକେ

ଅସହଯୋଗ କରୁଥିଲେ । ନେତା ଓ ମନ୍ତ୍ରୀମାନେ ଡ଼ରରେ ଲୁଚିଲେ ଓ ମିଲିଟାରୀ-ଦେହରକ୍ଷୀ ଫୌଜଙ୍କ ଦ୍ୱାରା ଆବୁଆଲରେ ରହି ପ୍ରମାଦ ଗଣିଲେ । ସେତେବେଳେ ମହତାବଜୀ ବମ୍ବେର ଗଭର୍ଣ୍ଣର ଥାଆନ୍ତି । ତତ୍ ପରେ ପରେ କଂଗ୍ରେସ ଲୋକେ ଏ ମହାନ୍ ବିପ୍ଲବୀଙ୍କୁ ଜାତିଆଣ ବିଚାରରେ ଭିନ୍ନ ଦୃଷ୍ଟିରେ ଦେଖିଲେ ଯଦିଓ ପ୍ରଜା ସୋସାଲିଷ୍ଟ ପାର୍ଟିର ଲୋକେ ଆନ୍ଦୋଳନରେ ସାମିଲ ଥିଲେ । ସେ ସମୟରେ ତାଙ୍କ ବିନା ଖଣ୍ଡାୟତ-କ୍ଷତ୍ରିୟ ମହାସଭା ଟିକିଏ ଧିମେଇ ଯାଉଥାଏ । ଗୃହ ସଂସାରର ଅର୍ଥ ନୈତିକ ପରିସ୍ଥିତି ଏବଂ ବିଭିନ୍ନ ରାଜନୈତିକ କାରଣରୁ ସେ ଟିକିଏ ନରମି ଗଲେ ସତ, କିନ୍ତୁ ପୁରୁଷ ସିଂହ ମଂଗରାଜ ସ୍ୱଧର୍ମରେ ରହି, ଟିକିଏ ମଂଗ ମୋଡ଼ି ଦେଇ କଂଗ୍ରେସୀ ନେତାମାନଙ୍କ ସହ ସାଲିସ୍ ଭାବ ଦେଇ କିଛି ଦିନ ଚଳିଲେ । ହେଲେ ହେଁ ନିଜସ୍ୱ ଗୁଣ ଓ ପ୍ରଚେଷ୍ଟା ଫଳ ସ୍ୱରୂପ ଓଡ଼ିଶା ରାଜ୍ୟ ବିଧାନ ସଭାର ଉପ-ବାଚସ୍ପତିଟିଏ ମାତ୍ର ହୋଇ ପାରିଥିଲେ ।

ତାଙ୍କୁ ତାରିଫ୍ କରୁଥିବା ଓ ତାଙ୍କ ସାତତଳେ ଥିବା ଲୋକେ ବଡ଼ ବଡ଼ ନେତା ଓ ମନ୍ତ୍ରୀ ହେଲେ । କିନ୍ତୁ ଏ ଓଡ଼ିଆ ଜାତିର କୁଟ, କପଟ, ମାୟା, ଛଳନା ଏବଂ ଶେଷ ଅସ୍ତ୍ର ଗୋଡଟଣାର ଶୀକାର ସେ ହେଲେ ବୋଲି ତାଙ୍କ ଆତ୍ମା ପୁରୁଷ ଆମ୍ଭମାନଙ୍କ ମନରେ ସତତଃ ଆବାଜ ଶୁଣାଉଛି । ଓଡିଆ ଜାତିର ସ୍ୱାଭିମାନ ଓ ଏ ମହାନ ବିପ୍ଲବୀଙ୍କର କାର୍ଯ୍ୟଧାରାକୁ ଯେଉଁ ନେତା, ଶିକ୍ଷାବିତ୍, ଜ୍ଞାନୀ, ସମାଜପ୍ରେମୀ, ଜନ ନାୟକମାନେ ନିଉନ କରିଦେବାରେ ସହଯୋଗ କରିଛନ୍ତି ଆଜି ସେମାନେ ଟିକିଏ ଚିନ୍ତା କରନ୍ତୁ ଯେ ସେମାନେ ଠିକ୍ କରିଛନ୍ତି କି ?

ଯେ କୌଣସି ପ୍ରକାର ମାଲିମକଦମାକୁ ସେ ମାମଲା ବା ମାଆ-ମଲା ସଂଗେ ତୁଳନା କରି ଗ୍ରାମ ସ୍ୱରାଜ୍ୟ ସ୍ଥାପନ କାର୍ଯ୍ୟକ୍ରମରେ ଗାଁର ବିଚାର ଗ୍ରାମରେ ହେବ ବୋଲି ଯେଉଁ ବାଣୀ ପ୍ରଚାର କରୁଥିଲେ ଏବଂ ବିଚାର କ୍ଷେତ୍ରରେ ଟାଉଟରୀ, ଜାଲିଆତି, ଚୋରି, ଦ୍ୱାଚୋରି, ଠକାମି ପ୍ରଭୃତି ମିଥ୍ୟାଚାରରୁ ଜନ ସମାଜକୁ ଉଦ୍ଧାର କରିବାକୁ ଯେଉଁ ସଂକଳ୍ପ ନେଇଥିଲେ ତହିଁରୁ ଭ୍ରଷ୍ଟ କରିଦେବା ପାଇଁ ତାଙ୍କର ଅତି ଆଦରର ପ୍ରାୟ ଦିନା ଡେଲି (ନିଶୁଆ ଡେଲି ଯାଉଥା ପେଲି ଡର ଡମାକୀରେ ଜର୍ଜରିତ ହୋଇ ) ତାଙ୍କ ବିରୋଧରେ ମିଥ୍ୟା ମୋକଦ୍ଦମା କରି କାଠଗଡାରେ ଠିଆ କରାଇଲେ । ଦେଶସେବା ଜନସେବା,

ସ୍ୱାଧିନତା, ଗଣତନ୍ତ୍ର ବ୍ୟବସ୍ଥା, ଦଳୀୟ ରାଜନୀତିର ଭ୍ରଷ୍ଟାଚାର ଦୁର୍ନୀତି ପ୍ରଭୃତି ବିପ୍ଲବୀଙ୍କ ପ୍ରତିଭା ଉପରେ ଧୂଳି ଧୂସରୀୟ ଅନ୍ତରଂଗ ଢାକୁଣୀ ପକାଇ ଦେଲା ପରି ସେ ଅତ୍ୟନ୍ତ ଅନୁଶୋଚନାରେ ମ୍ରୀୟମାଣ ଅବସ୍ଥାରେ ଶ୍ରୀମରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ୍ ହସପିଟାଲରେ ୧୯୬୪ ମସିହା ଅପ୍ରେଲ ଦୁଇ ତାରିଖରେ ତାଙ୍କ ଏ ଜରାଶରୀରରୁ ନିଜକୁ ବିଚ୍ଛିନ୍ନ କରିଦେଇଛନ୍ତି । ଆମ୍ଭମାନଙ୍କ ଚର୍ମ-ଚକ୍ଷୁରେ ଆଉ ସେ ଦୃଶ୍ୟମାନ ହେଉନାହାନ୍ତି ବୋଲି ଲୋକ କହୁଛନ୍ତି । ଏହାହିଁ ଓଡିଆ-ଜାତିର ବିପ୍ଲବୀ ବୀର ମଂଗରାଜଙ୍କ ଇତିବୃତ୍ତି ।



# ଓଡ଼ିଆ ବୀର ଯଦୁମଣି

ଶ୍ରୀ ଧନେଶ୍ୱର ମହାନ୍ତି

ଦୀର୍ଘ ଶହେପାଞ୍ଚ ବର୍ଷ ତଳେ ଯଦୁମଣି ମଙ୍ଗରାଜଙ୍କ ଜନ୍ମ, କେନ୍ଦ୍ରପଡା ଜିଲ୍ଲା କରିଲୋ ପାଟଣା ଗ୍ରାମରେ ।

ମଣିଷ ଏ ଜଗତକୁ ଆସନ୍ତି ପୁଣି ଚାଲି ଯାଆନ୍ତି ଏ ଚିରନ୍ତନ ବିଧାନ ପରମେଶ୍ୱରଙ୍କର ରହିଛି । ଏହାକୁ କେହି ଅନ୍ୟଥା କରିପାରିବେ ନାହିଁ ।

ମଣିଷ ଜୀବନର କର୍ମଧାରାର ଗତି ଦୁଇ ଭାଗରେ ବିଭକ୍ତି ଗୋଟିଏ ହେଲା ମୁଁ ରହିବି, ମୁଁ ଖାଇବି, ମୋର ଯାହା ଯାହା ମୋ ପାଇଁ ଦରକାର ତାହାସବୁ ଜୀବଥିବା ପର୍ଯ୍ୟନ୍ତ କରିଚାଲିବ । ଅନ୍ୟ ଦିଗଟି ହେଲା - ସମଷ୍ଟିଗତ ପ୍ରାଣ ସମୂହ ବା ସମସ୍ତଙ୍କ ପାଇଁ ଜୀବନ ଉତ୍ସର୍ଗ କରି ବହୁ କିଛି କରି, ଜନଗଣଙ୍କୁ ସୁଖ ସୁବିଧା ଦେଇ ଦେଶକୁ ସମୃଦ୍ଧିଶାଳୀ କରି ଗଢି ତୋଳିବି । ଏ ଯେଉଁ ଦ୍ୱିତୀୟ ଧାରା ଓ ଗତିର କାର୍ଯ୍ୟ ତାହା ଥିଲା - ବୀର ଓଡିଆ ଯଦୁମଣି ମଙ୍ଗରାଜଙ୍କର । ସେ ନିଜର ଜୀବନକୁ ତିଳ ତିଳ କରି ଜୀବନ ସାରା ବିତାଇ ଦେଲେ ଦେଶ ମାତୃକାର ସେବା ଓ ସଂଗଠନ କାର୍ଯ୍ୟରେ ।

ତାଙ୍କର ବିଶିଷ୍ଟ ଗୁଣ ହେଉଛି ଯଥା - ଦୁଃସାହାସୀ ନିର୍ଭୀକତା, ଧୈର୍ଯ୍ୟବାନ୍, ସତ୍ୟାଗ୍ରହୀ ନିଷ୍ଠା, ସାଧନା, ପରୋପକାରୀ ସ୍ୱଦେଶପ୍ରେମୀ ଜାତୀୟ ବାଦିତା ବାଗ୍ମିତା ମହାନ୍ ସଂଗଠକ ଅନ୍ୟାୟ ବିରୁଦ୍ଧରେ ଲଢେଇର ବୀରତ୍ୱ ପଣିଆ ।

ମହାତ୍ମା ଗାନ୍ଧୀଙ୍କର ସ୍ୱାଧୀନତା ଆନ୍ଦୋଳନରେ ସ୍ୱରାଜ୍ୟ ହାସଲର ସେ ଜଣେ ସତ୍ୟାଗ୍ରହୀ ଥାଇ କାରାବରଣ କରିଥିଲେ ।

ସେ ପ୍ରଥମେ ୧୯୪୦ ମସିହାରେ ଓଡିଶା ବିଧାନ ସଭାର ଏମ୍. ଏଲ୍. ଏ ଥିଲାବେଳେ, ୧୯୩୮ ମସିହାରେ ଯୁବ ଛାତ୍ରମାନଙ୍କର ଏକ ଅନୁଷ୍ଠାନ ଦେଶ ମିଶ୍ରଣ ପାଇଁ ଅବକାଶ ନାମରେ କଟକଠାରେ ଗଠିତ ହୋଇଥିଲା । ସେଥିରେ ସଭାପତି କମିଟି କାର୍ଯ୍ୟକାରୀ ସମିତିରେ ଥିଲେ ବୃନ୍ଦାବନ ସାହୁ, ସ୍ୱର୍ଗତ ଆର୍ତ୍ତତ୍ରାଣ ପ୍ରହରାଜ, ଯୁଗ୍ମ ସଂପାଦକ ସ୍ୱର୍ଗତ ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ ଏମ.ଏ. ଥିଲେ କୋଷାଧ୍ୟକ୍ଷ, ସ୍ୱର୍ଗତ ଶ୍ୟାମସୁନ୍ଦର ମିଶ୍ର ଏମ୍.ଏ ଥିଲେ ଏବଂ ସ୍ୱର୍ଗତ ବିଶ୍ୱନାଥ ମହାପାତ୍ର ଥିଲେ ଜଣେ ସେତେବେଳର ଅବକାଶ ବାହିନୀ ଏବେ ଉତ୍କଳ ବାହିନୀ ନାମରେ କାର୍ଯ୍ୟ କରୁଛି ।

ଓଡ଼ିଆ ବୀର ଯଦୁମଣି ଖାଲି ଭାରତ ସ୍ୱାଧୀନତା ପାଇଁ ଲାଗି ନ ଥିଲେ ସେ ଅତି ପ୍ରାଣପଣେ ଲାଗିଥିଲେ ଦେଶ ମିଶ୍ରଣ କାର୍ଯ୍ୟରେ ପୂର୍ଣ୍ଣାଙ୍ଗ ଉତ୍କଳ ଗଠନରେ ତାଙ୍କର ଅବଦାନ ତ୍ୟାଗ ବି କମ ନୁହେଁ । ସେ ଏକ ସଙ୍ଗରେ ଦୁଇଟି ଯାକ ଆନ୍ଦୋଳନରେ ବୀର ସୈନିକ ଯୋଦ୍ଧାର ପରିଚୟ ଦେଇଥିଲେ ।

ପଣ୍ଡିତ ନୀଳକଣ୍ଠ ଦାସ ପଣ୍ଡିତ ଗୋଦବରୀଶଙ୍କର ବିଶେଷ ସହଯୋଗୀ ଭାବେ ସାଙ୍ଗେ ସାଙ୍ଗେ ଥାଇ ଦେଶର ଜାତୀୟ ଜୀବନ ବଳିଷ୍ଠ କରିବାରେ ଓଡିଆ ଜାତିକୁ ପ୍ରବଳ ଉନ୍ମାଦନା ଦେଇ ଜାଗ୍ରତ କରିବା ତାଙ୍କର ଆଉ ଏକ ବଳିଷ୍ଠ ନେତୃତ୍ୱ ଥିଲା ।

ତାଙ୍କର ଅଗ୍ନି ସମଜ୍ୱାଳାମୟୀ ତର୍ଜନ ଗର୍ଜନ, ଜାତୀୟ ଭାବର ଯେଉଁ ଭାଷଣ, ତଥା କଥିତ କୌତୁହଳପୂର୍ଣ୍ଣ ହାସ୍ୟ ରସର ଉତ୍ତେଜନାର ବକ୍ତୃତା ଦେଶର ଅନ୍ୟାନ୍ୟବକ୍ତା କିମ୍ୱା ନେତାଙ୍କଠାରୁ ଶୁଣିବାକୁ ମିଳୁ ନ ଥିଲା ।

ସଭା ସମିତିରେ ଉପସ୍ଥିତ ଜନଗଣ ଅତି ଉଦ୍‌ବେଗ ଓ ଉତ୍‌କଣ୍ଠା ଭାବରେ ଚାହିଁ ରହିଥିବେ । ମଙ୍ଗରାଜ ଚଞ୍ଚଳ କାହିଁକି ଆସୁନାହାଁନ୍ତି ତାଙ୍କ ଭାଷଣ ଶୁଣିବା ପରେ ପରେ ଆମେ ସବୁ ଚାଲିଯିବା ବୋଲି ଲୋକେ କୁହାବୋଲା ହେଉଥିବାର ମୁଁ ଶୁଣିଛି । ଏହି ଭାଷଣ ନିମନ୍ତେ ସେ ଆଜି ସମସ୍ତଙ୍କ ମନରେ ରହିଛନ୍ତି ଓ ରହିବେ । ଏହା ହେଲା ତାଙ୍କର ବିଶିଷ୍ଟ ଗୁଣ ଗାରିମା । -

୧୯୬୪ ମସିହା ଡିସେମ୍ବର ମାସ ବୋଧେ ହେବ । ବିଚ୍ଛିନ ଉପାନ୍ତ ମେଦିନୀପୁର ଜିଲ୍ଲା, ଯାମିରାପାଳ ଗ୍ରାମରେ ଉତ୍କଳ ସମ୍ମିଳନୀ ଡକାଯାଉଥିଲା । ସେଠିକାର ଜାତିପ୍ରେମୀ ବିଶିଷ୍ଟ ବ୍ୟକ୍ତି ସ୍ୱର୍ଗତ ରାମଚନ୍ଦ୍ର ଦାସ ମହାପାତ୍ର ସମ୍ମିଳନୀରେ ଆୟୋଜନ କରି ଡକାଉଥାନ୍ତି । ଓଡିଶାର ନେତୃ ସ୍ଥାନୀୟ ବ୍ୟକ୍ତି ବିଶେଷଙ୍କୁ । ଉତ୍କଳବାହିନୀ ମୁଖ୍ୟ ସଂପାଦକ ଶ୍ରୀଯୁକ୍ତ ଚିନ୍ତାମଣି ପାଣିଗ୍ରାହୀ ଓ ମୁଁ ମଧ ସହକାରୀ ସଂପାଦନାର ଉକ୍ତ ସମ୍ମିଳନୀକୁ ଯାଇଥିଲୁ ।

ଅତି ଭୋରୁ ଭୋରୁ ଜାମ୍ବୁ କଲିକତା ଟ୍ରେନ୍‌ଟି ଲାଗିଲା, ସେହି ଷ୍ଟେସନରେ । ଆମେ ଦୁହେଁ ଅପେକ୍ଷାରେ ରହିଲୁ ଓଡିଶାର ନେତୃବୃନ୍ଦଙ୍କ । କିଛି ସମୟ ପରେ ଓଡିଶାର ଟ୍ରେନଟି ଆସି ସେହି ଦାନ୍ତନ ଷ୍ଟେସନରେ ଲାଗିଲା ।

ସେ ଟ୍ରେନରେ ଥିଲେ ବୀର ଓଡିଆ ଯଦୁମଣି, ଗାଡ଼ିରୁ ଓହ୍ଲାଇବା ମାତ୍ରେ ସାଙ୍ଗେ ସାଙ୍ଗେ ଜୟଉତ୍କଳ ଉତ୍କଳ ଜନନୀ ଜୟ ଧ୍ୱନୀ ମୁଖରିତ ହେଲା । ଦେଖୁ ଦେଖୁ ସେ ଗହଣରେ ଅଛନ୍ତି ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ, ଡକ୍ଟର ରାଧାନାଥ ରଥ,

ଆଡ଼ଭୋକେଟ ଶ୍ରୀ କବି ନବକିଶୋର ଦାସ , ବାଣୀ ବିନୋଦିନୀ ମନ୍ଦାକିନୀ । ଆଉ ଅନ୍ୟାନ୍ୟ କେତେକ ।

ଉତ୍କଳମଣି ସଭାପତି ସ୍ୱର୍ଗତ ବଳରାମ ନନ୍ଦ, ପ୍ରତିଷ୍ଠାତା ସ୍ୱର୍ଗତ ବୃନ୍ଦାବନ ସାହୁ,ସଂପାଦକ ଶ୍ରୀ ସୋମନାଥ ମିଶ୍ର । ପୁରୀ କଲେଜର ଛାତ୍ର ବାହିନୀ ଶ୍ରୀ ଚନ୍ଦ୍ରଶେଖର ଦେବଦତ୍ତ । ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବୈକୁଣ୍ଠ ନାଥ ପ୍ରତିହାରୀ ପ୍ରମୁଖ ବହୁ ବାହିନୀ କର୍ମଚାରୀ ।

ଦାନ୍ତନୁ ଷ୍ଟେସନଠାରୁ ଅଳ୍ପ ଦୂରରେ ଏକ ବିରାଟ ପୋଖରୀ ଅଛି । ଓଡିଆ ବୀର ଯଦୁମଣି କହିଲେ ପିଲେମାନେ ଶୁଣ । ଏ ପୋଖରିଟି ଆମର । ପୁରୀ ଗଜପତି ମହାରାଜା ମାନେ ଗଂଗାରେ ତ୍ରୀବେଣୀ ଘାଟକୁ ସ୍ନାନ କରିବାକୁ ଯିବାବେଳେ, ତାଙ୍କର ପାତ୍ର ମନ୍ତ୍ରୀ ପାଇକ ସାମନ୍ତ, ସୈନ୍ୟ ସାମନ୍ତ ଅଶ୍ୱ ହାତୀ ସମସ୍ତ ଗୁହିଣୀଙ୍କୁ ଏଠାରେ ବିଶ୍ରାମ କରାଉଥିଲେ । ସେମାନେ ସେତେବେଳେ ଗାଧୁଆ ସ୍ନାନ ନିତ୍ୟକର୍ମ କରିବା ପାଇଁ ଏ ପୋଖରୀଟି ଏ ଗ୍ରାମରେ ଖୋଳିଥିଲେ ମଝିରେ ମଝିରେ ଉତ୍କଳର ଜୟଧ୍ୱନୀ ଚାଲିଥାଏ । ଶୋଭାଯାତ୍ରା ଯାଇନାହିଁ ଗ୍ରାମକୁ ପ୍ରବେଶ ମାତ୍ରେ ଦେଖାଗଲା ଯେ, କାନ୍ଥ ବାଡ଼ରେ ସର୍ବତ୍ର ଲେଖା ଯାଇଛି ଓଡ଼ିଆମାନେ ଫେରିଯାଅ ଏହା ଦେଖି ବୀର ଓଡ଼ିଆ ମଙ୍ଗରାଜ ଅତି ଅସମ୍ଭାଳ କ୍ରୋଧ ଜର୍ଜରିତ ଦୁର୍ଦ୍ଦାନ୍ତ ହୋଇ ଉଠିଲେ - କହିଲେ ଶୁଣ ସମସ୍ତ ଭାଇ ଭଉଣୀଗଣ ଓଡିଆ ତାର ଅଭିଯାନରେ ଜୟ ନକରି ଫେରେନାହିଁ । ଏ ବୀର ଓଡିଆ ଜାତିର ଜ୍ୱଳନ୍ତ ଇତିହାସ, ସୁବର୍ଣ୍ଣ ନଦୀକୁ ଯିବା ପାଇଁ ଗାଁ ମାଟିରେ ଯେଉଁ ରାସ୍ତାଟି ଅଛି, ତାହା କଣ୍ଟାରେ ଆବଦ୍ଧ ହୋଇଛି । ତାହା ଦେଖି ଅତ୍ୟନ୍ତ ରାଗିଯାଇ କହିଲେ କିଏ ଅଛରେ ମୋତେ ଲୁଙ୍ଗି ଗାମୁଛା ଦିଅ । ମୁଁ ବାଡ଼ ଫାଡ଼ ଭାଙ୍ଗି ସମ୍ମିଳନୀ ମଣ୍ଡପକୁ ଯିବି । କାହାର ସାଧ୍ୟ ଅଛି ମୋତେ ଅବରୋଧ କରିବ ?

ଏ ଘଟଣା ଦେଖି ସାଙ୍ଗେ ସାଙ୍ଗେ ଲକ୍ଷ୍ମୀ ସାହୁ, ଡକ୍ଟର ରାଧାନାଥ ରଥ ପ୍ରମୁଖ ସେ ଗ୍ରାମର ବିଶିଷ୍ଟ ବୟସ୍କ ଲୋକଙ୍କୁ ଡକାଇ ସମସ୍ୟା ସମାଧାନ କରିଥିଲେ ।

ତାପରେ ଆମେ ସୁବର୍ଣ୍ଣ ନଦୀରେ ପଶି ନଦୀ ଆରପାଖ କୂଳରେ ସ୍ତ୍ରୀମାନେ ହୁଳହୁଳି ଓ ବନ୍ଦାପନା କରି ଅଭ୍ୟର୍ଥନା ସମିତିର ସଭାପତି ରାମଚନ୍ଦ୍ର ଦାସ ମହାପାତ୍ର ଚିଲିକାଗଡ ଜମିଦାରୀ ଅନ୍ୟାନ୍ୟ ମେଦିନିପୁରର ଓଡିଆ ବ୍ୟକ୍ତି ପଣ୍ଡିତ ଗୋବର୍ଦ୍ଧନ ତ୍ରୀପାଠୀ ପ୍ରମୁଖ ମିଶି ଆମକୁ ଜୟ ଜୟ ଧ୍ୱନୀ ଶୁଣାଇ ସଭାମଣ୍ଡପକୁ ନେଇ ଯାଇଥିଲେ । ସେ ଉତ୍କଳ ସମ୍ମିଳନୀର

ସଭାରେ ଯଦୁମଣିଙ୍କ ଭାଷଣ କି ତାତ୍ପର୍ଯ୍ୟ ପୂର୍ଣ୍ଣ ଯୁକ୍ତିଯୁକ୍ତ ଜାତୀୟ ପ୍ରେରଣାର ଉସ । ତାହା ଦେଖିଛି, ଶୁଣିଛି ଭୁଲିହବ ନାହିଁ । ଏସବୁ ମୋର ଅନୁଭୂତିର ।

ଦ୍ୱିତୀୟ ଥର ହେଲା -୧୯୫୩ ମସିହା ମେ ମାସ ଶେଷ ସପ୍ତାହ ହେବ ବୋଧେ । ସିଂହଭୂମୀ ଜିଲ୍ଲା ବିହାର ପ୍ରଦେଶ ବିଛିନ୍ନ ଅଞ୍ଚଳ ଟାଟା ଜାମସେଦପୁର ଠାରେ ସାହିତ୍ୟିକ ଭାଷଣରେ ବହୁ ଉପଦେଶ ପୂର୍ଣ୍ଣ ଦେଇ ଶେଷରେ କହିଥିଲେ ଯେ, ଓଡିଆ ଜାତି ଧନରେ ଦରିଦ୍ର ହୋଇ ମଧ ମନରେ ଦରିଦ୍ର ହେଲା ? ଏ ଜାତି କଣ ପ୍ରେରଣା ଦେବାରେ ଦରିଦ୍ର ହୋଇ ରହିବ । ଲକ୍ଷ୍ୟକରି ଉଠ, ଚାଲ । ଏପରି କହିବାରେ ସେ ହୀନମନା ନ ହୋଇ ଏ ପରାମର୍ଶ ଦେଉଛି ।

ତା ପରେ ଉଠିଲେ - ଯଦୁମଣି ମଙ୍ଗରାଜ ତାଙ୍କ ଭାଷଣ ଦେବା ପାଇଁ ଲୋକେ ଭାରି ଅସ୍ଥିର ମଙ୍ଗରାଜ କଣ କିପରି କହିବେ । ସେ କିଛି ସମୟ ବୀରତ୍ୱପୂର୍ଣ୍ଣ ଭାଷଣ ଦେଉ ଦେଉ କହିଲେ ମୁଁ ଏଥର ଏଠି ଓଡିଆ ସାଜିବି ସାଙ୍ଗେ ସାଙ୍ଗେ ପଞ୍ଜାବୀ କଲିକତା ଲୁଗା ପିନ୍ଧି ବି ମୁଣ୍ଡରେ ଏକ ଗାମୁଛା ଠେକା ବାନ୍ଧି ସଭାରେ ଓଡିଆ ଢ଼ଙ୍ଗରେ ଠିଆ ହୋଇ ଭାଷଣ ବକ୍ତୃତା ଦେଲେ । ଏ ସିଂହ ଭୂମୀ, ମାଳଭୂମି ଓ ବୀର ଭୂମୀ ଆଗ ଓଡ଼ିଆଙ୍କର । ଏଠି ଧଳଭୂମୀ ଅଛି । ଏଠାରେ ଧଳଭୂମୀର ରାଜାମାନେ ରାଜତ୍ୱ କରୁଥିଲେ । ଏହି ହେଉଛି ଆମ ଧଳବଂଶ ରାଜା । ସଢେଇକଳା ରାଜା ଆମ ଓଡିଆ ରାଜା ସେ ଆମର । ଏହାର ପ୍ରକୃତ ନା ହେଉଛି - ଷୋଡସକଳା, ଷୋଳ,କଳାରେ ପରିପୂର୍ଣ୍ଣ ।

ଆମେ ଓଡିଆମାନେ ସେଥିରେ ବଡ଼ ଥିଲୁ । ସେ ଅତି ଉଦ୍‌ବେଗ ଭାବରେ କହିଲେ ଆମ ଠାକୁର ବଡ଼ ଠାକୁର, ଆମ ଦାଣ୍ଡ ବଡଦାଣ୍ଡ, ଆମ ନଦୀ ମହାନଦୀ, ଆମ ଦେଉଳ ବଡ ଦେଉଳ, ଆମ ପ୍ରସାଦ ମହାପ୍ରସାଦ, ଆମ ସିଂହାସନ ରତ୍ନ ସିଂହାସନ, ଆମ ମଣ୍ଡପ ମୁକ୍ତି ମଣ୍ଡପ, ଆମ ପର୍ବତ ମହେନ୍ଦ୍ରଗିରି, ଆମ ବିଜୟ କଳିଙ୍ଗ ବିଜୟ ।

ମୁଁ ନିଜେ ଦେଖିଛି ସେଦିନ ସେଠାରେ ସେ ଅତି ଉଦବେଳିତ କରି ପକାଇଲେ ଶେଷରେ କହିଲେ - କଳା,ସାହିତ୍ୟ, ବାଣିଜ୍ୟ ସମର, ଖଣିଜଦ୍ରବ୍ୟ, ହ୍ରଦ ସାଗର ସବୁଥିରେ ଭରା ଆଉ ମଧ ଆମେ ଦରିଦ୍ର କେବଳ ଜାତିୟତାରେ । ଏ ଜାତିକୁ ଧନୀ କଲାପରେ ପାର୍ଥିବ ଧନ ତା ସଙ୍ଗେ ସଙ୍ଗେ ରହିଛି । ସେ ମିଳିଯିବ ଏଥିରେ ସନ୍ଦେହ ନାହିଁ ।

ବୀର ଓଡିଆ ଯଦୁମଣି ତାଙ୍କ ସଂଗଠନ କାଳରେ ଓଡ଼ିଶାକୁ ଏକତ୍ର କରି ଓ ବଡ଼ କଷ୍ଟ କରି ତାଙ୍କ ମନରେ ବୀରତ୍ୱ ଆସିବା ପାଇଁ ନାୟକ ନାମକ ଏକ ପତ୍ରିକା ପ୍ରକାଶ କରୁଥିଲେ ।

ଷଡେଇକଳା ଓ ଖରସୁଆଁ ଓଡ଼ିଶାରେ ମିଶିବା ପାଇଁ କଟକରେ ସେ ଯେଉଁ ଆନ୍ଦୋଳନ କରି କଟକ ସହରକୁ ହୁଲୁସ୍ଥୁଲୁ କରିଥିଲେ ତାହାର ପଟାନ୍ତର ନାହିଁ । ତାହା ଫଳରେ ଓଡିଶାର ଦୁଇଜଣ ଯୁବକ ସହୀଦ ହେଲେ ।

କଟକର ସୁନିଲ ଦେ ପ୍ରଥମ ଏବଂ ପୁରୀର ବେଙ୍ଗପାଣିଆ ଦ୍ୱିତୀୟ । ସେ ଓଡ଼ିଶା ବିଧାନ ସଭାର ଉପବାଚସ୍ପତି ହୋଇ ମଧ ସ୍ୱନାମ ରଖି ଯାଇଛନ୍ତି ।

ଦେଖାଇବା ପାଇଁ ପ୍ରାଣ ଉତ୍ସର୍ଗ କରି ଅମରତ୍ୱ ଲାଭ କରିଗଲେ । ଏବେ ଓଡିଶାରେ ପ୍ରତିମା ପୂଜା ରେ ବହୁ ଧନ ସମୟ ବ୍ୟୟ ହୋଉଥାଏ । କିନ୍ତୁ ପ୍ରତିମା ପୂଜାରେ ଉଲ୍ଲେଖନୀୟ ସେପରି ହେଉନାହିଁ । ସର୍ବତ୍ର ପ୍ରତିଭା ପୂଜାହେଲେ ଏ ଜାତି ଉଠିବ । ତାଙ୍କର ଜୀବନରେ ଦେଶପାଇଁ ଯେଉଁ ସବୁ କାର୍ଯ୍ୟ ହେଲେ ଜନଗଣ ସୁଖି ହେବେ ତାହା ଏପର୍ଯ୍ୟନ୍ତ ହୋଇ ନାହିଁ । ଉତ୍କଳର ସର୍ବାଙ୍ଗିନ ଉନ୍ନତି ସାଙ୍ଗେ ସାଙ୍ଗେ ଗଣ-ସୁଖ ଶାନ୍ତି ରାଜ୍ୟ ପ୍ରତିଷ୍ଠା ହୋଇ ନାହିଁ ।

ସ୍ୱର୍ଗରେ ରହି ତାଙ୍କର ଅମର ଆତ୍ମା ସେହି ସମୟର ସୁଯୋଗକୁ ସେ ନିଶ୍ଚୟ ଚାହୁଁଥିବେ । ତାହା ନ ଆସିଲେ ତାଙ୍କର ଆତ୍ମା ଅସନ୍ତୋଷରେ ରହିଥିବ । ମୋର ଆଶା ଯଦୁମଣି ମଙ୍ଗରାଜଙ୍କୁ ସର୍ବତ୍ର ସମ୍ମାନ ଦିଆଯାଇ ତାଙ୍କର ସ୍ମୃତିଚାରଣ କରାଯାଉ ।



# ଯଦୁମଣିଙ୍କ ସହିତ କେତୋଟି ମୂହୁର୍ତ୍ତ

ବିନୟ ଭୂଷଣ ମିଶ୍ର

ଆମେ ସେତେବେଳେ ରେଭେନ୍‌ସା କଲେଜରେ ପାଠ ପଢୁଥିଲୁ । ଯଦୁମଣି ମଂଗରାଜ ଥାନ୍ତି ଉପବାଚସ୍ପତି । ଛାତ୍ର ସମାଜରେ ପ୍ରାୟ ସବୁବେଳେ ଯଦୁମଣିଙ୍କ ବିଷୟରେ ଚର୍ଚ୍ଚା । ତାଙ୍କ କହିବା କଥା, ବିଧାନ ସଭା ଭିତରେ ଓ ବାହାରେ ତାଙ୍କର ବକ୍ତବ୍ୟ ପ୍ରତ୍ୟେକ ଶବ୍ଦ ଆଲୋଚନାର ବିଷୟ ଆମ ଭିତରେ । ଯେତେବଡ଼ ଗୁରୁତ୍ୱପୂର୍ଣ୍ଣ କଥାହେଉ, ତହିଁରୁ ପରିହାସ ସୃଷ୍ଟିକରି ସମସ୍ତଙ୍କ ମନରେ ଓ ମୁହଁରେ ହସ ଆଣିଦେବାରେ ତାଙ୍କର ଏକ ଅପୂର୍ବ ଦକ୍ଷତା ଥିଲା । ସାରା ରାଜ୍ୟକୁ ହସାଉଥିଲେ, ହସାଇ ହସାଇ ବେଦମ୍ କରିଦେଉଥିଲେ ।

ଆମେ ପାଞ୍ଚଜଣ ଛାତ୍ର ଦିନେ ବିଚାର କଲୁ ବିଧାନ ସଭା ଦେଖିଯିବା । ସେତେବେଳେ ବିଧାନସଭା ଥିଲା ବର୍ତ୍ତମାନର ସର୍ଦ୍ଦାର ପଟେଲ ହଲରେ । ବିଧାନଭବନ ପରିସର ଭିତରେ ପଶିବାପାଇଁ ଆଜି କାଲି କା ପରି ଏତେ କଟକଣା ନ ଥିଲା । ପରିସର ଭିତରେ ତ ପଶିଲୁ ବିଧାନ ସଭା ଭିତରକୁ ଯିବୁ କିପରି ? ଜଣେ ବିଧାୟକଙ୍କ ସୁପାରିଶ ଦରକାର ପାସ୍ ପାଇଁ । ଯେଉଁ ଅଳ୍ପ କେତେକ ବିଧାୟକଙ୍କୁ ଆମେ ଚିହ୍ନିଥିଲୁ ସେମାନେ କରଛଡା ଦେଲେ । ଆମେ ବିଚାର କଲୁ ଏତେ କଥା କାହିଁକି ଚାଲଯିବା ଉପବାଚସ୍ପତିଙ୍କ ପାଖକୁ । ଆମକୁ ଆଦବ କାଇଦା ଜଣାନାହିଁ । ସିଧା ତାଙ୍କ ଚାମ୍ବରରେ ପଶିଲୁ । ତୁମେ ସବୁ କିଏ କିରେ ପିଲେ ? ମୁହଁରେ ଅଫୁରନ୍ତ ହସ ସାର ଆମେ ରେଭେନସା କଲେଜକୁ ଆସିଛୁ । କୁଆଡେ ପଚେର ଆସିଲେ ? ବିଧାନସଭା ଦେଖିବୁ ।

ଭଲକଥା ମୋ ସାଙ୍ଗରେ ଆସ କହି ସେ ନିଜେ ଆମକୁ ସାଙ୍ଗରେ ଆସି ବାଚସ୍ପତିଙ୍କ ଅତିଥି ଗାଲେରୀରେ ବସାଇଲେ, କହିଲେ ଲଂଚ ବ୍ରେକ ବେଳେ ମୋ

ଚାମ୍ବରକୁ ପଳେଇ ଆସିବ , ଆମେ ଗଲୁ । ଆସ ମୋ ସାଙ୍ଗରେ କହି କ୍ୟାଣ୍ଟିନକୁ ନେଇଗଲେ ଓ କ୍ୟାଣ୍ଟିନ ମାଲିକଙ୍କୁ କହିଲେ ମୋ ପିଲାମାନେ ଯାହା ଖାଇବେ ଦେବୁ , ପେଟ ପୂରେଇ ଖୋଇବୁ, ତାଙ୍କୁ ପଇସା ମାଗିବୁନି । ଆମକୁ କହିଲେ ଖାଅ ପିଲେ, ପେଟ ପୁରାଇ ଖାଇବ, ଖାଇ ସାରି ମୋ ଚେମ୍ବରକୁ ଆସିବ । ଆମେ ଆକଣ୍ଠ ଖାଇଲୁ । ଚାମ୍ବରକୁ ଗଲୁ । ସାର, ଆମେ କଟକ ଫେରି ଯାଉଛୁ । ନାଁ ବିଧାନ ସଭା ମଧରେ ଶେଷ ହେବା ପର୍ଯ୍ୟନ୍ତ ଦେଖ, ତମେ ସବୁ ପରା କଲେଜରେ ମକ୍ ଆସେମ୍ବ୍ଲି କରୁଛ ? ଆମେ ବୁଢାଙ୍କଠାରୁ କିଛି ଭଲ ଅଭଲ ଶିଖିଯାଅ ଆମେ କେମିତି ଡେଇଁବୁ ନାଚୁଛୁ ଦେଖ । ଆମର ନା କହିବାର ଚାରା ନଥିଲା ଓ ସୁଯୋଗ ନ ଥିଲା । ପୁଣି ନିଜେ ଆଣି ପୁଣି ଆମକୁ ଗାଲେରୀରେ ବସେଇ ଦେଇ ଗଲେ କହିଲେ ଯିବା ପୂର୍ବରୁ ମତେ ଭେଟିବ ଆମେ ଭେଟିଲୁ । ଆଉ ଟିକେ ଜଳଖିଆ ଖାଅ ନାଇଁ ସାର ପେଟରେ ଜାଗା ନାହିଁ । ହଉ, ବସ ଭଡ଼ା ପାଇଁ ପଇସା ଅଛି ? ଅଛି ସାର ହଉ ଯାଅ କଟକରେ ମୋ ଘରକୁ ଆସିବ । ପ୍ରାୟ ଦୁଇମାସପରେ ମୁଁ ଦିନେ ରବିବାର ଦିନ ସଂଧ୍ୟାରେ ତାଙ୍କ ଘରେ ପହଞ୍ଚିଲି । ସିଧାଘର ଭିତରକୁ ଚାଲିଗଲି । ନାଲି ରଙ୍ଗର ଲୁଙ୍ଗି ଖଣ୍ଡେ ପିନ୍ଧି ଖାଲି ଦେହରେ ସେ ବୁଲୁଥାନ୍ତି ବାରଣ୍ଡାରେ । ମୋତେ ଦେଖି ପାଖକୁ ଧାଇଁ ଆସିଲେ, ତୁ ଆସିଲୁ, ତୁ ଭାରି ଭଲ ପିଲା ଆ ବସ । ମତେ ଚୌକିଟିଏ ଦେଇ ନିଜେ ପାଖରେ ବସିଲେ । ପୁଣି ସେହିପରି ଭୂରି ଭୋଜନ । ମତେ ବୁଲେଇ ବଗିଚା ଦେଖାଇଲେ । କେତେ କଥା କହିଲେ । ସବୁ କଥା ମୋର ଆଜି ଆଉ ମନେ ନାହିଁ, ପ୍ରାୟ ଘଣ୍ଟାଏ ପରେ ମୁଁ କହିଲି, ସାର ମୁଁ ଯାଉଛି, ହ ଉ ଯା କହି ସେଇ ଖାଲି ଦେହରେ ରାସ୍ତା ପର୍ଯ୍ୟନ୍ତ ମତେ ବାଟେଇ ଦେବାକୁ ଆସିଲେ । ତୋ ସାଇକେଲ କାହିଁ ? କେମିତି ଆସିଲୁ ? ରିକ୍ସାରେ ଆସିଲୁ କାହିଁକି ? କେଉଁଠି ରହୁଛୁକି ? ଓ୍ୱେଷ୍ଟ ହଷ୍ଟେଲରେ, ଟିକିଏ ଠିଆ ହ, କହି ଭିତରକୁ ଚାଲିଗଲେ ଫେରିଆସି ମୋ ହାତରେ ଟଙ୍କିକିଆ ମୁଦ୍ରା ଜବରଦସ୍ତି ଗେଂଜି ଦେଲେ ରିକ୍ସା ଭଡ଼ା ଦେଇଦେବୁ । ମୁଁ ଜାବା ହୋଇ ତାଙ୍କ ମୁହଁକୁ ଚାହିଁଛି ଟଙ୍କା ରଖି ପାରୁନି କି ଫେରାଇ ପାରୁନି ଯା, ସେ ଆଗ ଛକରେ ରିକ୍ସା

ମିଳିବ ଏମିତି ମଝିରେ ମଝିରେ ପକେଟର ଆସିବୁ । ମୁଦ୍ରାଟି ହାତରେ ଧରିଥାଏ । ମୁଁ ହଷ୍ଟେଲ ଆସି ବନ୍ଧୁମାନଙ୍କୁ କହିଲି, ଟଙ୍କାଟି ଦେଖାଇଲି ସମସ୍ତେ ପାଟି ମେଲାକରି ମତେ କିଛି ସମୟ ଚାହିଁ ରହିଲେ ଆମକୁ ଡାକିଲୁନି, ମିଶିକରି ଯାଇଥାନ୍ତେ । ଡାକିନି ଭଲକରିଛି ବୋଲି ଭାବୁଛି । ଡାକିଥିଲେ ସେ ପାଞ୍ଚଟା ରିକ୍ସାପାଇଁ ଭଡା ଦେଇଥାନ୍ତେ ସେ ମୁଦ୍ରାଟି କୁଆଡେ ଖର୍ଚ୍ଚ ହୋଇଗଲା ।କିନ୍ତୁ ସ୍ମୃତିରେ ରହିଗଲା । ଯେଉଁ ଯଦୁମଣି ଆମ ପାଇଁ ଯଦୁମଣି ରହସ୍ୟର ନାୟକଥିଲେ, ସେ ମୋ ପାଖରେ ରହସ୍ୟମୟ ହୋଇଗଲେ । ସେଇ ରହସିଆ, ମଉଜିଆ ଯଦୁମଣିଙ୍କ ଅନ୍ତରାଳରେ ଗୋଟିଏ ମାନବିକତା ପୂର୍ଣ୍ଣ, ସ୍ନେହମୟ, ଗାମ୍ଭୀର୍ଯ୍ୟଭରା ଯଦୁମଣି ଥିଲେ ବୋଲି ମତେ ଲାଗିଲା । ମୁଁ ଆଉ ତାଙ୍କ ପାଖକୁ ଯାଇନି ଭୟରେ କାଳେ ଟଙ୍କା ଦେବେ ମୁଁ ଗ୍ରହଣ କରି ପାରିବିନି କି ପ୍ରତ୍ୟାଖାନ କରି ପାରିବିନି । ଏରକ୍ଷଣି ପଶ୍ଚାତାପ କରୁଛି କାହିଁକି ଥରକୁ ଦଶଥର ତାଙ୍କ ପାଖକୁ ନ ଗଲି । ପଶ୍ଚାତାପ କରୁଛି ସେ ଟଙ୍କିକିଆ ମୁଦ୍ରାକୁ ଖର୍ଚ୍ଚ ନକରି ସାଇତି କରି ରଖିଲିନି କାହିଁକି ?



# ଯଦୁମଣି ମଙ୍ଗରାଜ : ଏକ ଦୃଷ୍ଟିପାତ

ଡଃ କୈଳାସ ଚନ୍ଦ୍ର ଦାଶ

ଯଦୁମଣି ମଙ୍ଗରାଜ ଏହି ଶତାବ୍ଦୀର ଓଡିଶାରେ ସୁପରିଚିତ ସଂଗଠକ ଓ ନିର୍ଭୀକ ନେତା । ତାହାଙ୍କର ନାନାବିଧ କାର୍ଯ୍ୟମାଳା ଆଜି ପର୍ଯ୍ୟନ୍ତ ଐତିହାସିକ ମାନଙ୍କୁ ତଥା ସମାଜତତ୍ତ୍ୱବିତ୍ ମାନଙ୍କୁ ବିଶେଷ ଆକୃଷ୍ଟ କରିପାରି ନଥିବା ବଡ଼ କ୍ଷୋଭର ବିଷୟ । ମଙ୍ଗରାଜ ଏକଦା ଓଡିଆ ଜାଗୃତି ଓ ପରିଚିତର ଆତ୍ମପ୍ରକାଶ ପାଇଁ ପ୍ରବଳ ଉଦ୍ୟମ କରିଥିଲେ, ପୁଣି ଭାରତୀୟ ମୁକ୍ତି ସଂଗ୍ରାମର ଜଣେ ଅନନ୍ୟ ସାରଥି ଥିଲେ । ସମାଜର ସଂସ୍କାର ପାଇଁ ଉଦ୍ଦିଷ୍ଟ ଖଣ୍ଡାୟତ କ୍ଷତ୍ରିୟ ସଭାର ଆଦ୍ୟ ପ୍ରବକ୍ତା ହିସାବରେ ମଧ୍ୟ ସେ ପରିଚିତ ଥିଲେ । ତାହାଙ୍କର ସାହସିକତା ଅନନ୍ୟ ସାଧାରଣ । ତାହାଙ୍କର ବାଗ୍ମୀପ୍ରବଣତା ସାରା ଓଡିଶାରେ ପ୍ରସାରି ଯାଇଥିଲା । ସେହି ମହାନ୍ କଂଗ୍ରେସ ନେତା ତଥା ସଂଗଠକ ଯଦୁମଣିଙ୍କ ସଂପର୍କରେ କିଛି ତଥ୍ୟ ଉପସ୍ଥାପନ କରିବା ଏ କ୍ଷୁଦ୍ର ପ୍ରବନ୍ଧର ଲକ୍ଷ୍ୟ ।

୧୯୧୭ ମସିହାରୁ ଯଦୁମଣି ଓଡ଼ିଶା ରାଜନୀତିକୁ ବୁଝିଜାଣିଥିଲେ ।

ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ୧୯୧୭ରେ ହେବାର ଥିଲା । ଏହା ହୋଇପାରି ନଥିଲା । ଏହା ସହିତ ଏକ ଛାତ୍ର ସମ୍ମିଳନୀ ମଧ୍ୟ ଆୟୋଜିତ ହୋଇଥିଲା । ଉତ୍କଳ ସମ୍ମିଳନୀର ସଂଗଠନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଯଦୁମଣି ମଙ୍ଗରାଜ ସ୍ୱେଚ୍ଛାସେବକ ଦଳର ନାୟକ ଥିଲେ । ଛାତ୍ର ସମ୍ମିଳନୀର ଉଦ୍ୟୋକ୍ତାମାନେ କଲିକତାର ବିଖ୍ୟାତ ଶିକ୍ଷାବିତ୍, ବଂଗୀୟ ନେତା ଦେବପ୍ରସାଦ ସର୍ବାଧିକାରୀଙ୍କ ଠାରୁ ସଭାପତି ହେବା ପାଇଁ ସମ୍ମତି ଆଣିଥିଲେ । ମାତ୍ର ମଧୁବାବୁଙ୍କର ଛାତ୍ରନେତାମାନଙ୍କ ସହିତ ବିଶେଷତଃ ମଙ୍ଗରାଜଙ୍କ ସହିତ ମନୋମାଳିନ୍ୟ ଘଟିବାରୁ ମଧୁବାବୁ ଦେବପ୍ରସାଦବାବୁଙ୍କୁ ସଭାପତି ନ ହେବା ପାଇଁ ପରାମର୍ଶ ଦେଲେ । ଯଦୁମଣି ସୂତାହାଟରେ ରହି ଲକ୍ଷ୍ମୀ ନାରାୟଣ ସାହୁଙ୍କ ସାହାଯ୍ୟରେ ଫକୀରମୋହନ ସେନାପତିଙ୍କୁ ଛାତ୍ର ସମ୍ମିଳନୀର ସଭାପତି ପାଇଁ ଡକାଇ ଆଣିଥିଲେ । ମାତ୍ର ମଧୁବାବୁ ଫକୀରମୋହନଙ୍କୁ ଉତ୍କଳ ସମ୍ମିଳନୀରେ ସଭାପତି ହିସାବରେ ବରଣ କରିଥିଲେ । ଯଦୁମଣିଙ୍କ ନେତୃତ୍ୱରେ ଛାତ୍ରମାନେ ସ୍ୱେଚ୍ଛାସେବକ ହେବାକୁ ଅନିଚ୍ଛା

ପ୍ରକାଶ କରିଥିଲେ । ମଧୁବାବୁ ଅବଶ୍ୟ ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ରମାନଙ୍କ ସାହାଯ୍ୟ ନେଇଥିଲେ । କିନ୍ତୁ ଯଦୁମଣିନିର୍ଭିକ ଭାବରେ ମଧୁବାବୁଙ୍କ ସହିତ ଯୁକ୍ତ କରିଥିଲେ ଓ ସହଯୋଗ କରିନଥିଲେ ।

ପରବର୍ତ୍ତି ପର୍ଯ୍ୟାୟରେ ମହାତ୍ମା ଗାନ୍ଧୀଙ୍କର ଆହ୍ୱାନ କ୍ରମେ ଓଡିଶାରେ ଯେଉଁ ଆନ୍ଦୋଳନ ହୋଇଥିଲା - ସେଥିରେ ମଙ୍ଗରାଜ ବିଶେଷ ଭୂମିକା ନେଇଥିଲେ । ଓଡିଶାର ବିଖଣ୍ଡିତ ଅଂଗଗୁଡିକୁ ଏକତ୍ରିତ କରି ଏକ ଶାସନରେ ଆଣିବା ପାଇଁ ଦୀର୍ଘ ୩୦ ବର୍ଷ ଧରି ଓଡିଆମାନେ ଉଦ୍ୟମ ଓ ଆନ୍ଦୋଳନ ଚଳାଉଥିଲେ । ଏହି ଆନ୍ଦୋଳନରେ ଯଦୁମଣି ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

୧୯୩୯ ମସିହାରେ କଟକରେ ନିଖିଳ ଉତ୍କଳ ଯୁବକ ସମ୍ମିଳନୀ କଂଗ୍ରେସ ସଭାପତି ସୁଭାଷ ଚନ୍ଦ୍ର ବୋଷଙ୍କର ବିପୁଳ ସମ୍ବର୍ଦ୍ଧନା କରିଥିଲେ । ଏହି ସମ୍ମିଳନୀର ଅଭ୍ୟର୍ଥନା ସଭାର ସଭାପତି ରୂପେ ଯଦୁମଣି ମଙ୍ଗରାଜ ଯେଉଁ ଭାଷଣ ଦେଇଥିଲେ ତାହା ଯୁଗାନ୍ତକାରୀ, ସେଥିରେ ସେ ପ୍ରକାଶ କରିଥିଲେ - ଉତ୍କଳର ଯୁବଜାଗରଣ ଆଜି ନୂତନ ନୁହେଁ । ଉତ୍କଳ ବଂଗଳା ସହିତ ବହୁ ଦିନରୁ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ଥିବାରୁ ବଂଗଳାର ଅଂଗଚ୍ଛେଦ ଜନିତ ତ୍ରୀବ୍ର ଜାତୀୟ ଆନ୍ଦୋଳନର ଉତ୍ତାପ ଉତ୍କଳବାସୀ ଓଡିଆ ପ୍ରାଣକୁ ମଧ ସ୍ପର୍ଶ କରିଥିଲା । ବାଗ୍ମୀ ବିଶ୍ୱନାଥଙ୍କର ଯେତେବେଳେ କଟକର ଉନ୍ମୁକ୍ତ ରାଜପଥରେ ବିଲାତି ବର୍ଜନ କରିବାକୁ ଉତ୍ସାହପୂର୍ଣ୍ଣ ବକ୍ତୃତା ଦ୍ୱାରା ଦେଶବାସୀଙ୍କୁ ପ୍ରବୃତ୍ତାଇ ସ୍ଥାନେ ସ୍ଥାନେ ବସ୍ତ୍ରଯଜ୍ଞ ଆରମ୍ଭ କରିଦେଇଥିଲେ, ସେହି ବାହ୍ମ୍ୟ ମୁହୂର୍ତ୍ତରୁ ଓଡିଆ ଯୁବକର ପ୍ରାଣ ଉଦବେଳିତ ହୋଇ ଉଠିଛି । ତାର ଜଡତା ତାର ମୁଷୁପ୍ତି ଭାଙ୍ଗି ଯାଉଛି । ୧୯୦୩ ସାଲରେ ବୀର ଓଡିଆ ତାର ସ୍ୱାଧିନତା ହରାଇ ମଣିହରାଫଣୀ ପରି ଯେଉଁ ହୁହୁତାଶ କରୁଥିଲା ପ୍ରାତଃ ସ୍ମରଣୀୟ ଜଗବଂଧୁ ବିଦ୍ୟାଧରଙ୍କର ପାଇକ ସୈନ୍ୟମାନେ ଅଳ୍ପସଂଖ୍ୟକ ହେଲେ ହେଁ ଇଂରେଜ ପୁଙ୍ଗବ ସୈନ୍ୟମାନଙ୍କ ହୃଦୟରେ ଯେଉଁ ଭୟ ଓ ଆତଙ୍କ ସୃଷ୍ଟି କରିପାରିଥିଲେ ତାହା ଆଜିସୁଦ୍ଧା ଇତିହାସ ପୃଷ୍ଠାରେ ଅମରାକ୍ଷରରେ ଲିପିବଦ୍ଧ ହୋଇଅଛି । ଛୈତ୍ରମଣି ଘେନି ନନ୍ଦିକା ଅଭିସାରଣୀ ବେଶରେ ବୀର ଚୋଡଗଙ୍ଗଙ୍କ ଠାରେ ପ୍ରେମଭିକ୍ଷା କଲାବେଳେ ଯୁବକ ଚୋର ପ୍ରେମମୁଗ୍ଧ ହେଲେ ହେଁ ଚୋରି କରିବାର ଆଦର୍ଶଓଡିଶାକୁ ଶିଖାଇ

ଯାଇନାହିଁ । ପୁଣ୍ୟତୋୟା ମହାନଦୀର ବକ୍ଷପରେ ଥିବା ବାରବାଟିର ପବିତ୍ର ଧୂଳିକଣା ବୀରରକ୍ତରେ ଶିକ୍ତ ହୋଇ ନଷ୍ଟ ପ୍ରାଣରେ ଯେଉଁ ଅପୂର୍ବ ସ୍ମୃତି ଜଗାଇଦିଏ, ଓଡିଆ ଯୁବକ ତାହା ସ୍ମରଣ କରି ବିସ୍ତାରିତ ନେତ୍ରରେ ଦୃଷ୍ଟି ପକାଇ ଦିଏ ଇତିହାସର ସେହି ପୃଷ୍ଠାକୁ ଯାହାର ଛତ୍ରେ ଛତ୍ରେ ଓଡ଼ିଆ ଯୁବକର ବୀରତ୍ୱ ପୂରି ରହିଛି । ପ୍ରାଣ ଶିହରି ଉଠେ- ଶରୀର ରେ ।ମାଞ୍ଚିତ ହୁଏ, ଅଜ୍ଞାତରେ ଶୁଷ ଅସ୍ଥି ପଲ୍ଲବୀ ଉଠେ । ଓଡିଆ ଯୁବକ ଅଙ୍ଗୁଳି ନିର୍ଦ୍ଦେଶ କରି କଂପିତ ହସ୍ତରେ ଆବେଗରେ ଚିତ୍କାର କରେ - ପ୍ରତିଶୋଧ, ପ୍ରତିଶୋଧ । ଯେ ମୋର ଗାରିମାମୟ ଇତିହାସକୁ ଆଜି ଅତଳଗହ୍ୱରରେ ବଳପୂର୍ବକ କବର କରିନେଇଛି । ହେ ସ୍ରଷ୍ଟା ! ହେ ଶୂଳପାଣି ! ହେ ସାରଥୀ ! ସ୍ୱାଧିନତା ସଂଗ୍ରାମର ନନ୍ଦିଘୋଷ ଘେନି ଓଡ଼ିଆ ଯୁବକ ପୁନର୍ବାର କଣ ତାର ବିଜୟଶ୍ରୀ ଲାଭ କରିବାକୁ ଅଭିଯାନ କରିବ ନାହିଁ ? ସତେ କଣ ଆଉ ଥରେ ଓଡ଼ିଆ ବୀରବାଳା ତାର ବୀର ସନ୍ତାନକୁ ବକ୍ଷକାଛି ପିନ୍ଧାଇ ଦେବୀଦତ୍ତ ମାଲ୍ୟବିଭୂଷିତ କରି ମସ୍ତକରେ ବିଜୟ ଟୀକା ଦେଇ ଉନ୍ମୁକ୍ତ ତରବାରୀ ହସ୍ତରେ ସହାସ୍ୟ ବଦନରେ ରଣପ୍ରାଙ୍ଗଣକୁ ପ୍ରେରଣ କରିବା ନାହିଁ ? ସେ ଦିନ, ସେ ଯୁଗ, ସେ ମାହେନ୍ଦ୍ରବେଳ କଣ ଓଡିଆ ପକ୍ଷରେ ଅନନ୍ତକାଳ ପାଇଁ ବିଫଳକୁ ହେଳିକା ହେବ ? ଫେରିବ ନାହିଁ କି ଆଉ ସେ ରୁକୁଣାର ରଥ ? ବିଜୟଲକ୍ଷ୍ମୀ କି ଚିରଦିନ ପାଇଁ ହୋଇଛି ଅନ୍ତର ? ଓଡ଼ିଆ ଯୁବକର ପ୍ରାଣ ଗାଏ କବିଙ୍କର ବିଷାଦର ଗାଥା-ହା ଦଇବ, ଜମ୍ବୁକ ପଶି ହର୍ଯ୍ୟକ୍ଷ ଗୁହାରେ, ଗୋଇଠା ପ୍ରହାରି, ଦେବତା ମୁଖୁ ଓଟାରି ଗ୍ରାସତାର, ହର୍ଯ୍ୟକ୍ଷତା ସହିବ ମଉନେ ? ଚିରଦିନ ତୃଷାନଳେ ହେଉଥିବ ଦଗ୍‌ଧ ।

ଏହି ଅଭିଭାଷଣରେ ମଙ୍ଗରାଜଙ୍କ ଯୁବଶକ୍ତି ଜାଗରଣ ପାଇଁ ଉଦ୍ୟମର ସୂଚନା ସଂଗ୍ରହ କରାଯାଇପାରେ । ମଗଂରାଜ ଯୁବଶକ୍ତିର ମୂଲ୍ୟ ସାରାଜୀବନକାଳ ମଧ୍ୟରେ ବେଶ ବୁଝିଥିଲେ ଏବଂ ଗୁରୁତ୍ୱ ଦେଉଥିଲେ । ଓଡିଆ ଜାତିର ଉତ୍ଥାନ ଓ ଓଡିଆ ପରିଚିତିର ସଂପୂର୍ଣ୍ଣ ନିର୍ମାଣ ପାଇଁ ମଙ୍ଗରାଜ ଯୁବଶକ୍ତି ଉପରେ ଯେଉଁ ପ୍ରାଧାନ୍ୟ ଆରୋପ କରିଥିଲେ ତାହା ତାଙ୍କ ଜୀବନର ଏକ ବିଶିଷ୍ଟ ଅବଦାନ ।



# ଯଦୁମଣି ମଙ୍ଗରାଜ ଓ ହାସ୍ୟରସ

ମହାପାତ୍ର ଯତୀନ୍ଦ୍ର କୁମାର

ଯଦୁମଣି ମଂଗରାଜ ହାସ୍ୟରସରେ ବି ନିପୁଣ ଥିଲେ ।

ଥରେ ମାଳତୀ ଚୌଧୁରୀ ତାଙ୍କୁ ଥଟ୍ଟା କରି କହିଲେ, କଣ ଯଦୁବାବୁ, ବୁଢା କାଳେ ପୁଣି ବାହା ହେଲ ? ତା ପୁଣି ଜଣେ ୟଂ ଲେଡିକୁ ।

ମଙ୍ଗରାଜେ କହିଲେ, ବୁଢି ଖୋଜିଲି, ଜଣେ ଥିଲେ । ତାକୁ ତ ବୁଢା ନବବାବୁ ନେଇଗଲେ । ତେଣୁ ବାଧ ହୋଇ ୟଂ ଲେଡି ବାହା ହେଲି ।

ସୀମା ଅନ୍ଦୋଳନ ବେଳେ କହିଲେ ଏଇ ସଭାରେ ଏତେ ଝିଅଙ୍କୁ ଦେଖି ମୋର ଖାଲି ଉଠୁଚି ଏବଂ ବୋହୁଚି । ଜନତା ହସି ଉଠିଲା । ମଂଗରାଜ କହିଲେ, ଆପଣ ଜାଣିବାକୁ ଚାହିଁବେ, କଣ ଉଠୁଚି ଆଉ କଣ ବୋହୁଚି ? ଛାତିରେ ଉଠୁଚି କୋହ, ଆଉ ଆଖିରୁ ଝରୁଛି ଲୁହ, ଏଇ ଆନ୍ଦୋଳନକାରୀ ଝିଅଙ୍କ କଷ୍ଟ ଲାଠିମାଡ, ଜେଲ୍ ଯାତ୍ରା ଦେଖି ! କହିଲେ, ବେଶୀ ହାସ୍ୟରସ ମୁଁ ନୁହେଁ, କରି ଥିଲେ ରଘୁ ରାଉତ ! ତୋ ଲାଗି ସରଳା ଛାଡିଲି ପାରଳା, ରହିଲି କଟକେ ଯାଇ । ଏତେ ଏତେ ତୁ ତ ଚୋଦଣା ଲଭିଲୁ ଚେତନା ଆସିଲା ନାହିଁ । ଅଶ୍ଳୀଳତା ଅଭିଯୋଗରେ ମକଦ୍ଦମା ହେଲା । ମୁଁ ରଘୁକୁ ଦେଖାଇ ଦେଲି ଡିକ୍ସନାରୀ । । ଚୋଦଣା ଅର୍ଥ ପ୍ରେରଣା । ରଘୁ ଖସି ଗଲା । ମୁଁ ତ ଶିଖାଇ ଥିଲି ସତକଥାରେ ତାହା ଲେଖିବା ପାଇଁ !

ରେଭେନ୍ସାରେ ପଡିବା ବେଳେ ରାଧାନାଥ ଗ୍ରନ୍ଥାବଳୀକୁ ଗାଳି ଦେଇ କହିଥିଲେ, ରବିନ୍ଦ୍ର ଯେ ଦୁଇ ବିଘା ଜମିରେ ଲେଖିଲେ, ଝୁଣ୍ଟି ବନ୍ଧା ଉଡେ ପଞ୍ଚମସୁରେ ପାଡିତେ ଲାଗିଲ ଗାଳି : ବଙ୍ଗାଳୀ ସମ୍ବନ୍ଧେ ସେଇ ପରି କିଛି ନ ଲେଖି ରାଧାନାଥ ଓଡିଆ ରାଜାଙ୍କ ଚରିତ୍ର ସଂହାର କଲେ । ନାୟକ ତେ ସିଏ କ୍ଷତ୍ରିୟ ଖଣ୍ଡାୟତଙ୍କୁ ଟେକି ଥିବାରୁ କରଣ ଭୋଟର୍ ତାଙ୍କୁ ତାହା କହିବାରୁ ସିଏ କହିଲେ, ଗୋପୀନାଥ ମହାନ୍ତି ଲେଖିଛନ୍ତି, ଖଣ୍ଡାୟତ ଓ କ୍ଷତ୍ରିୟଙ୍କ ଅବୈଧ ସନ୍ତାନ କରଣ । ନିଜେ ସ୍ୱୟଂ କରଣ ହେଇ ମଧ ଗୋପୀନାଥ ମହାନ୍ତି !!! ବୀରେନ୍ ସାସମଲ୍ ବାରିଷ୍ଟର ତାଙ୍କୁ କହିଲେ ମେଦିନୀପୁରରେ, କାହିଁକି ଆମେ ଓଡିଶାରେ ମିଶିବୁ ? ସେଠି କଣ କଲିକତା ଅଛଇ ? ରବିନ୍ଦ୍ର ନାଥ ଅଛି ? କୋଲାଘାଟ୍ ଇଲିସି ଅଛି ? .....

ଯଦୁମଣି କହିଥିଲେ, ତମେଯାଉଚ ଓଡିଶାକୁ କାହିଁକି ସେଠି ଚିଲିକା ଅଛି , ଜଗନ୍ନାଥ ମନ୍ଦିର ଅଛି, ଉପେନ୍ଦ୍ର ଭଞ୍ଜ ଅଛି , ଅଶୋକଙ୍କ ଶଳାଲିପି ଅଛି, କୋଣାର୍କ ଅଛି, ଯାହା ଏଠି ବେଙ୍ଗଲରେ ନାହିଁ । ଚିଲିକା ମାଛ ବେଶୀ ଦାମ୍‌ରେ କିଣୁଛ ; ତମ କୋଲାଘାଟ ଇଲାସି ଠାରୁ ଭଲ ବୋଲି !!! ଚିଲିକାର ଚିଙ୍ଗୁଡି ଆମେରିକା ସୃଷ୍ଟି କରି ପାରୁନି; ବେଶୀ ଦାମ ଦେଇ କିଣୁଚି । ଗଂଗା ଠାରୁ ଗୋଦାବରୀ ମାନେ ବୁଝିଛ ? ଗଂଗା ଯାଏ ମାଡି ଯାଇଥିଲୁ ବୋଲି ନଚେତ୍ ଏ ପଟ୍ ବି ପାକିସ୍ଥାନ ନେଇ ଥାଆନ୍ତା । ବଙ୍ଗ ନ ଥାଆନ୍ତା ଭାରତରେ !

ରାଉରକେଲାରେ କହିଥିଲେ,ରାଧା ମୋହନ ଗଡନାୟକ ଲେଖିଛନ୍ତି, ଯାହା, ଯନ୍ତ୍ର ତୋତେ କି ମନ୍ତ୍ର କରିଚ ମାଟିର ମଣିଷ ଆରେ ! ପରେ ଦିନେ ତମମାନଙ୍କୁ ମାଟିକୁ ଫେରିବାକୁ ହେବ । ମାଟି ରହିବ । ରହିବ ଚିରଦିନ ! କାରଖାନା ବନ୍ଦ ହୋଇ ଯିବ ଥାନ୍ତ ରିକ ବିଭବ ଖଣିରୁ ସରିଗଲେ !!!

ଆଜି କଣ ସେଇଆ ହେଉ ନାହିଁକି ?

ଗୋଟିକ ପରେ ଗୋଟିଏ କଳ କାରଖାନା ବନ୍ଦ ହୋଇ ଯାଉଚି । କିନ୍ତୁ ମାଟି ରହିଚି ।

ଦୀନବନ୍ଧୁ ସାହୁଙ୍କ ପିତୃଶ୍ରାଦ୍ଧରେ ପହଞ୍ଚି କହିଲେ ଦୀନା ମୋ ବନ୍ଧୁ । ତା ବାପା ମରିଗଲା । ସିଏ ଡାକିଲାନି । ମୁଁ ପତର ନେଇ ଆସିଚି । ଦିଅ

ଦୀନବନ୍ଧୁ କ୍ଷମା ମାଗିଲେ ।

ଥରେ ପିଲାଏ କହିଲେ, ଆମେ ମଡର୍ଣ୍ଣ ଡ୍ରାମା କରୁ ଚୁ । ଆପଣ ଦେଖିବାକୁ ନିମନ୍ତ୍ରଣ ।

ଡ୍ରାମାର ନାଆଁ କଣ ? ପଚାରିଲେ ମଂଗରାଜ ।

ଶକୁନ୍ତଳା !

ଶକୁନ୍ତଳା ! ତେବେ ଡ୍ରେସ୍ ଗୁଡା ମଡର୍ଣ୍ଣ ସାଇଜ୍ ହୋଇଛି ତ ?

ହସି ହସି ପଚାରିଲେ ମଙ୍ଗରାଜ, ଦୁଷ୍ମନ୍ତଙ୍କ ସୁଟ ବୁଟ୍ । ଆଶ୍ରମକୁ କାର ବା ହେଲିକାପ୍ଟରରେ ଯିବା !!! ଆଶ୍ରମରେ ଗେଷ୍ଟ ରୁମ୍ । ଆଉ ଶକୁନ୍ତଳାଙ୍କ ଡ୍ରେସ !!!

ପିଲାମାନେ କହିଲେ , ନାଁ । ଖାଲି ପ୍ରକାଶ ଭଙ୍ଗୀରେ ।

ମଙ୍ଗରାଜ କହିଲେ, ମଡର୍ଣ୍ଣ ହେବ ଓ ଆଧୁନିକ ନାଟକ କର । ଆଜିକାର ରାଜନୀତିକୁ ନେଇ ନାଟକ !!!

ସେ ନିର୍ବାଚିତ ହେବା ପରେ ଗଣତନ୍ତ୍ର-ପରିଷଦ ତାଂକୁ ଡାକିଲା, ମନ୍ତ୍ରୀ ହୋଇ ଯୋଗ ଦେବାକୁ ଦଳବଳ ନେଇ । କହିଲେ, ତା ହେଲେ ତମ ଟିକଟରେ ଆଉ ଥରେ ଲଢି ଜିତିବାକୁ ହେବ । ମୁଁ ହିମାଂଶୁ ଶେଖର ପାଢୀ ନୁହେଁ ।

ସୀମା ଆନ୍ଦୋଳନ ବେଳେ ନିଜକୁ ଗଭର୍ଣ୍ଣର ବୋଲି ଘୋଷଣା କରିଥିଲେ । ନବବାବୁ କହିଥିଲେ, ମୋ ପାଖକୁ ଆସିଚ କାହିଁକି ? ଗଭର୍ଣ୍ଣର ପାଖକୁ ଯାଅ । ଗଭର୍ଣ୍ଣର ତ ମୁଖ୍ୟ ମନ୍ତ୍ରୀ ପାଖକୁ ଯାଏନା । ମୁଖ୍ୟମନ୍ତ୍ରୀ ଗଭର୍ଣ୍ଣର ପାଖକୁ ଯାଏ । ବୋଲି ହସି ହସି ଜୋକ୍ କରିଥିଲେ ମଂଗରାଜ ।

ତାଙ୍କ ଯୁବତୀ ବିବାହକୁ ନେଇ ଶ୍ରଦ୍ଧାକର ସୂପକାର୍ ଜୋକ୍ କରିବାରୁ ସେ କହିଥିଲେ ତୁମେ ମଧ ତାହା କରିଚ । କିନ୍ତୁ ପୁତ୍ର ନିବେଶୀ ପତ୍ନୀ ପାଶେ ଅଥବା ଚଳିବ ସନ୍ନ୍ୟାସେ କରୁନ ଭୟରେ ! ତମେ ଦିଲ୍ଲୀ ଗଲେ ପୁଅ ପାଖରେ ସ୍ତ୍ରୀ ଛାଡ ନାହିଁ । କଣ ଠିକ୍ ନାଁ ?

ଥଟ୍ଟା ମଜ୍ଜାରେ ତାଙ୍କୁ କିଏ ପାରିବ ?



# ସ୍ମୃତିର ଆଲେଖ୍ୟ

ଶ୍ରୀମତୀ ସଂଯୁକ୍ତା ଚୌଧୁରୀ

ବାପା ୧୮୯୪ ମସିହା ଜାନୁଆରି ପହିଲା ତାରିଖରେ କେନ୍ଦ୍ରପଡା ଅନ୍ତର୍ଗତ କରିଲୋ ପାଟଣା ଗ୍ରାମରେ ଏକ ସଂଭ୍ରାନ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଆଇଙ୍କଠୁଁ ଯାହାଂ ଶୁଣିଛି ବାପା ରାଜକନିକାରେ ତାଙ୍କ ବଡ଼ଭାଇ କ୍ଷେତ୍ରବାସୀ ମଂଗରାଜଙ୍କ ପାଖରେ ରହି ପାଠ ପଢିଥିଲେ ଓ ପରେ କଟକ ପ୍ୟାରୀମୋହନ ଏକାଡେମୀରୁ ମାଟ୍ରିକ୍ ପାସ କରିଥିଲେ (ପାଟନା ବିଶ୍ୱ ବିଦ୍ୟାଳୟରୁ) । ୧୯୧୭ ମସିହାରେ ବାପା ରେଭେନ୍ସା କଲେଜରେ ଯୋଗଦାନ କଲେ । ସେଠାରେ ତାଙ୍କର ସାକ୍ଷାତ ହେଲା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ସହ । ଏପଟରେ କଲେଜରେ ପାଠ ପଢୁଥାନ୍ତି ଓ କଂଗ୍ରେସର ସକ୍ରିୟ କର୍ମୀଭାବେ କଂଗ୍ରେସରେ କାମ କରିବା ଆରମ୍ଭ କଲେ । ୧୯୧୮ ମସିହାରେ ବାପାଙ୍କର ବିବାହ ସଂପନ୍ନ ହୋଇଥିଲା, କେନ୍ଦ୍ରପଡା ଅଞ୍ଚଳର ଏକ ଧନୀ ପରିବାରରେ । ସେତେବେଳେ ମୋ ଆଇଙ୍କଠୁଁ ଶୁଣିଥିବା ଏକ ଅଭୁଲା କାହାଣୀର ଅବତାରଣା କରୁଛି । ବିବାହ ପାଇଁ ବାପା ଉତ୍କଳମଣିଙ୍କ ଠାରୁ ଅନୁମତି ନେଇ ପନ୍ଦର ଦିନ ପାଇଁ ଗାଁକୁ ଆସିଥିଲେ । ରହୁ ରହୁ ମାସାଧିକ ସମୟ ଗାଁରେ ରହିଗଲେ । ସେତେବେଳକୁ କଣାସ ଅଞ୍ଚଳରେ ପ୍ରବଳ ବନ୍ୟା । ସରକାରୀ ସାହାଯ୍ୟ କିଛି ନଥିଲା । ବାପାଙ୍କ ଏଇ ସମୟରେ ଅନୁପସ୍ଥିତି ଗୋପବନ୍ଧୁଙ୍କୁ ବଡ ବାଧିଲା । ପଣ୍ଡିତ ଗୋପବନ୍ଧୁ ବାପାଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଲେ ଯେ ସ୍ନେହର ଯଦୁ, କଣାସ ଅଞ୍ଚଳରେ ପ୍ରବଳ ବନ୍ୟା । କୃପାସିନ୍ଧୁ (ପଣ୍ଡିତ କୃପାସିନ୍ଧୁ ହୋତା) କିଛି ଚୂଡା ଚାଉଳ ଧରି ସେ ଅଞ୍ଚଳକୁ ଯାଉଛନ୍ତି । ତମର ଯଦି ଘର ସଂସାର ଯୋଡିବାକୁ ଏତେ ମନଥିଲା, ଦେଶସେବା କରିବା ପାଇଁ ଆଗେଇ ଆସିଲ କାହିଁକି ? ଚିଠି ପାଇ ବସିଲାଠୁଁ ଉଠିଆସ, କଣାସ ଅଞ୍ଚଳକୁ । ଶୁଣିଲି ବାପା ଖାଇବା ଥାଳି ପାଖରୁ ଉଠି ଯାଇଥିଲେ । ଦେଶସେବା ପାଇଁ କି ଆକୁଳ ଆବେଦନ । ଜନଗଣର ଦୁଃଖ ଯାତନା ଲାଘବ ପାଇଁ ଏ ପରି ସେବା ଆଜି ରାତ୍ରର ଦୁଃସ୍ୱପ୍ନ ଭଳି । ଆଜିକାଲି ବିପନ୍ନଙ୍କୁ ସାହାଯ୍ୟ କେବଳ ପଞ୍ଚତାରକା ହୋଟେଲ କିମ୍ବା ଶୀତତାପ ନିୟନ୍ତ୍ରଣ କୋଠରୀରେ ସଭା କରିବା ଅବା ହେଲିକେପ୍ଟରରୁ ଦୁଃଖ ଦୁର୍ଦ୍ଦଶା ଦୂରବୀକ୍ଷଣ ଯୋଗେ ଦେଖି ସମାପନ କରାଯାଉଛି । ଦଳୀୟ କର୍ମୀ ଓ ଶାସନକଳ ହାତରେ ବାଟ ମାରଣାର ସୁଯୋଗ ପାଇଁ ଅମାପ ଟଙ୍କା । ୧୯୨୦ ମସିହାରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସଭାପତିତ୍ୱରେ ଗଠିତ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିରେ ସେ

କରାଗଲା ଓ ସେଠାରେ ସେ ୧୯୬୪ ମସିହା ପର୍ଯ୍ୟନ୍ତ ଚିକିତ୍ସିତ ହେଉଥିବା ଅବସ୍ଥାରେ ଅପ୍ରେଲ ମାସ ୨ ତାରିଖରେ ସ୍ୱର୍ଗାରୋହଣ କଲେ । ଏକ ମହାନ୍ ପବିତ୍ର ଆତ୍ମାର ମହାପ୍ରୟାଣ ଘଟିଲା । ସେହି କ୍ରୁର ବ୍ୟାଧିର ଶିକାର ହୋଇ ସେ ଦିନକ ପାଇଁ ଘରକୁ ସ୍ଥାନାନ୍ତରିତ ହୋଇ ତାଙ୍କର ମନୋନୀତ ବ୍ୟକ୍ତିଙ୍କୁ ମୋ ସହିତ ୧୯୬୨ ମସିହା ଫେବୃୟାରୀ ୧୬ ତାରିଖ ଦିନ ବିବାହ ବନ୍ଧନରେ ଆବଦ୍ଧ କରି ପୁଣି ଫେରିଯାଇଥିଲେ ସେହି କଟକ ବଡ଼ ଡାକ୍ତରଖାନାକୁ ।

ମୋ ବାପାଙ୍କର ଆଦର୍ଶବାଦ ମୋତେ ଏକ ନିର୍ଭୀକା ଓ ସ୍ପଷ୍ଟବାଦିନୀ ନାରୀ କରିପାରିଛି । ବାପାଙ୍କର ଆଦର୍ଶରେ ଅନୁରଞ୍ଜିତ ଓ ଅନୁପ୍ରାଣୀତ ହୋଇ ଶିକ୍ଷା ଜୀବନ ଅତିକ୍ରମ କରି ଶିକ୍ଷାର ଉଚ୍ଚ ସମ୍ମାନଲାଭ କରି ଶିକ୍ଷା ଜଗତରେ ପ୍ରତିଷ୍ଠିତ ହେଲି । ଏପରିକି ପୁରୁଣା ଭୁବନେଶ୍ୱରର ଏକ ଶ୍ମଶାନକୁ ଜନ ବସତିରେ ପରିଣତ କଲି । ସେଠାରେ ଶିକ୍ଷାର ସୌଧ ଗଢ଼ି ଉଠିଲା । ନାରୀ ଜାଗରଣ ଓ ଶିକ୍ଷାର ଭିତ୍ତିଭୂମୀ ସ୍ଥାପନ କରାଗଲା । ଏହି ଭିତ୍ତିଭୂମୀ ଉପରେ ସମ୍ମାନମୋର ସ୍ୱାଗତ ଜ୍ଞାପନ କଲା । ପ୍ରଧାନ ଶିକ୍ଷୟିତ୍ରୀ ଭାବେ କୃତିତ୍ୱ ହାସଲ କରି ୧୯୮୩ ମସିହାରେ ରାଜ୍ୟପାଳଙ୍କ ପୁରସ୍କାର ଓ ୧୯୮୫ ମସିହାରେ ରାଷ୍ଟ୍ରପତିଙ୍କ ପୁରସ୍କାର ଲାଭକଲି । ପରେ ପରେ କର୍ମକ୍ଷେତ୍ରରେ, କର୍ମ ଯୋଜନାରେ ଓ ସାମାଜିକ ଜୀବନରେ ସବୁକିଛି ପ୍ରତିଷ୍ଠା, ପ୍ରଖ୍ୟାତି ଔଜ୍ଜଲ୍ୟରେ ମୋର କର୍ମସାରଣୀକୁ ଭରି ଦେଇଛି ବାପାଙ୍କ କର୍ମ ପ୍ରେରଣା ।

ମୋର କାର୍ଯ୍ୟ ଦକ୍ଷତା, ନିର୍ଭିକତା, ଓ ସ୍ପଷ୍ଟବାଦିତା ସ୍ୱର୍ଗତଃ ଡଃ ହରେକୃଷ୍ଣ ମହତାବ, ସ୍ୱର୍ଗତଃ ଡ଼ଃ ରାଧାନାଥ ରଥ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କୁ ଅତିଶୟ ଆକୃଷ୍ଟ କରିଥିବାରୁ ମୁଁ ଅନେକ ସମୟରେ ସେମାନଙ୍କ ସ୍ନେହ ଓ ଆଶିଷ ଲାଭ କରିଥିଲି । ସେ ମହାନ୍ ବ୍ୟକ୍ତିମାନଙ୍କ ଠୁଁ ମୁଁ ବାପାଙ୍କ ବିଷୟରେ ବହୁତ କଥା ଜାଣିବାକୁ ପାଇଥିଲି ।

ଡ଼ଃ ମହତାବ କହୁଥିଲେ ଯେ ଭାରତବର୍ଷରେ ଯଦୁମଣିଙ୍କର ଅନେକ ଅନ୍ତରଙ୍ଗ ବନ୍ଧୁଥିଲେ ଯଥା : ଭାରତର ପ୍ରଥମ ରାଷ୍ଟ୍ରପତି ସ୍ୱର୍ଗତଃ ଡ଼ଃ ରାଜେନ୍ଦ୍ର ପ୍ରସାଦ, ଭାରତର ପୂର୍ବତନ ବୈଦେଶିକ ମନ୍ତ୍ରୀ ସ୍ୱର୍ଗତଃ ଡଃ ଭି. କେ. କ୍ରିଷ୍ଣମେନ୍ନ, ପୂର୍ବତନ ଲୋକସଭା ବାଚସ୍ପତି ସ୍ୱର୍ଗତଃ ଆୟାଙ୍ଗାର ଇତ୍ୟାଦି । ବାପାଙ୍କ ସହ ସେମାନେ ସବୁ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ଏକ ସଙ୍ଗେ ବିହାରର ହଜାରୀବାଗ ଜେଲ୍‌ରେ ସାଢେ ତିନି ବର୍ଷ କାରାବରଣ କରିଥିଲେ । ସେମାନେ ଜେଲ୍ ଭିତରେ ଯଦୁମଣିଙ୍କ ସ୍ୱହସ୍ତ ରାନ୍ଧଣା ଖାଇ ପ୍ରୀତ ହେଉଥିଲେ ।

ବାପା ମୋର ଇଂରେଜ-ବିଦ୍ରୋହୀ ଥିବାରୁ ରେଭେନ୍ସା କଲେଜରୁ ବି.ଏସ୍‌ସି.

ପରୀକ୍ଷା ଦେବାରୁ ବଞ୍ଚିତ ହେବାରୁ ବନାରସ ବିଶ୍ୱ ବିଦ୍ୟାଳୟରୁ ବି.ଏସ୍‌ସି ପାଶ୍ କରି ୧୯୨୧ ମସିହାରେ ଗାନ୍ଧିଜୀଙ୍କ ଆହ୍ୱାନରେ ପାଠପଢା ଛାଡି ଅସହଯୋଗ ଆନ୍ଦୋଳନରେ ଯୋଗଦେବା ପରଠାରୁ ତାଙ୍କ ଜୀବନର ମୋଡ ସଂପୂର୍ଣ୍ଣ ବଦଳି ଯାଇଥିଲା । ତାଙ୍କର ଜୀବନ ଥିଲା ସଂଘର୍ଷମୟ, କାର୍ଯ୍ୟକ୍ଷେତ୍ର ଥିଲା ଏକ ବିରଳ ବିସ୍ମୟ ଓ ହୃଦୟଥିଲା ସାଗରଠୁ ଗଭୀର ଓ ପ୍ରସାରିତ ।

ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ଦ୍ୱିବେଦୀ ମହାଶୟ କହନ୍ତି ଯେ, ଯଦୁମଣି ମଙ୍ଗରାଜଙ୍କୁ ଅନ୍ୟ ସ୍ୱାଧୀନତା ସଂଗ୍ରାମୀଙ୍କଠାରୁ ଭିନ୍ନ ଦୃଷ୍ଟିକୋଣରେ ଦେଖାଯାଉଥିଲା । ଦେଶପ୍ରେମର ବହ୍ନି ତାଙ୍କ ହୃଦୟରେ ଏପରି ଜଳୁଥିଲା ଯେ ସେ ସାଧାରଣ ଧାରାବାହିକ କାର୍ଯ୍ୟ ପ୍ରତି ଆଗ୍ରହୀ ନଥିଲେ । ୧୯୩୦ ମସିହାରେ ଗାନ୍ଧିଜୀଙ୍କ ଲୁଣମରା ଆନ୍ଦୋଳନ ଆମକୁ ପୋଷାଇବ ନାହିଁ । ମୁଁ ହନୁମାନ ପରି ଚାରିଆଡେ ଡେଇଁ ବିଦ୍ରୋହର ନିଆଁ ଲଗାଇଦେବି, ବ୍ରିଟିଶ ଶାସନ ଯନ୍ତ୍ରକୁ ଅଥୟ କରିଦେବି । ବାସ୍ତବିକ୍, ସେତେବେଳେ ସେ ଓଡିଶାର ପୁରପଲ୍ଲୀରେ ବୁଲି ଏପରି ହୁଲସ୍ଥୁଲ ମଚାଉଥିଲେ ଯେ ବ୍ରିଟିଶ ସରକାର ତାଙ୍କୁ ସାଢେ ତିନିବର୍ଷ କଠିନ ସଶ୍ରମ କାରାଦଣ୍ଡ ଦେଇ ହଜାରିବାଗ ଜେଲ୍‌ରେ ବନ୍ଦୀକରି ରଖିଥିଲେ । ବିନା ଅସ୍ତ୍ରରେ ସେତେବେଳେ ଚାଲିଥିବା ମୁକ୍ତିଯୁଦ୍ଧରେ ସ୍ୱର୍ଗତଃ ଯଦୁମଣି ଥିଲେ ଜଣେ ପ୍ରବୀଣ ମହାରଥୀ । ନେତା ହେବାକୁ ସେ କେବେ ଲାଳାୟିତ ହୋଇ ନ ଥିଲେ । ସେ ବିଧାନସଭାର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ । ଓଡିଶାର ବିଚ୍ଛିନ୍ନାଞ୍ଚଳ ସିଂହଭୂମି, ଧଳଭୂମି, ଷଢେଇକଳା- ଖରସୁଆଁ, ବସ୍ତର, ଫୁଲଝର ଇତ୍ୟାଦି ଅଞ୍ଚଳରେ ଦିନ-ଦିନ ଧରି କାମ କରିଥିଲେ । ସଭା ସମିତି କରି ଉଦ୍‌ବୋଧନ ଦେଉଥିଲେ । ସେଠା ଲୋକଙ୍କ ମନରେ ଜାଗରଣ ଅଣାଉଥିଲେ । ଦେଶରେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଉଥିଲେ । ଥରକୁ ଥର ଜେଲ୍ ଭୋଗିଥିଲେ । ନିର୍ଯ୍ୟାତନା ଓ କଷଣ ସହିଥିଲେ । କେବେ କିନ୍ତୁ ଗର୍ବ ଅହଂକାର କରିନଥିଲେ ।

ସ୍ୱର୍ଗତଃ ଡଃ ମହତାବ କହୁଥିଲେ ଯେ ମଙ୍ଗରାଜେ ଦି ରକମର ମଣିଷ ଥିଲେ । ସଭା ସମିତିରେ, ବିଶେଷକରି କଂଗ୍ରେସ ସଭା ମାନଙ୍କରେ ପ୍ରକାରେ-ଜ୍ୱାଳାମୟ, ଅଗ୍ନିବାଣ ଆଉ ବାହାରେ, ଘରେ ଓ ବନ୍ଧୁମେଳରେ ଅତି ସ୍ନେହୀ, ଆଳାପି । ତାଙ୍କ ଭାଷଣରେ ଥିଲା ଉଦ୍ଦୀପନା ଓ ମାଦକତା । ତାହା ଲୋକଙ୍କୁ ହସେଇ, କନ୍ଦେଇ ଓ ମତେଇ ଦେଇ ପାରୁଥିଲା । ପ୍ରତିପକ୍ଷ ପ୍ରତି ବ୍ୟଙ୍ଗ ଓ ପରିହାସ ଛଳରେ ନିଜର ମତ ପ୍ରକାଶ କରିବା ତାଙ୍କର ଏକ ସ୍ୱତନ୍ତ୍ରତା ଥିଲା ।

ମୁଁ ନିଜେ ମଧ୍ୟ କଟକରେ କିଛି କିଛି ବାପାଙ୍କ ଭାଷଣ ଶୁଣିବାର ସୌଭାଗ୍ୟ ଲାଭ କରିଛି । ତାଙ୍କର ପ୍ରଚଣ୍ଡ ବାଗ୍ମୀତା ପାଇଁ ସେ ଥିଲେ ଅନନ୍ୟ, ଅସାଧାରଣ । ସାଗର ଉର୍ମିର ଲହରୀ ପରି ଭାଷାର ଲହରି ତାଙ୍କର ଧାତବ କଣ୍ଠରୁ ଭାସିଆସେ, ଜଳଦ ଗମ୍ଭୀର

ଭୀଷଣ । ମହାଭାରତରେ ବୀର ଭୀମସେନ ବାଉନଭାର ଗଦାଧରି କୁରୁକ୍ଷେତ୍ର-ରଣକ୍ଷେତ୍ରରେ ମାତିଉଠିବା ପରି ସେ ମାତି ଉଠୁଥିଲେ ଭୀଷଣର ସଂଗ୍ରାମକୁ । ସୀମା ଆନ୍ଦୋଳନରେ ଓଡ଼ିଶାର ଏକ ପ୍ରାନ୍ତରୁ ଅନ୍ୟପ୍ରାନ୍ତ ଯାଏଁ ସେ ଶୁଣାଉଥିଲେ — ଉତ୍କଳ ମାତାର ବିଚ୍ଛିନ୍ନ ଅଞ୍ଚଳକୁ ଏକ କରିବାର ସଂକଳ୍ପ ଘୋଷଣା । କେତେ ଦୃପ୍ତଥିଲା ସେ ଆହ୍ୱାନ । ସ୍ୱାଧୀନତା ସଂଗ୍ରାମ ହେଉ ବା ବେଶ ମିଶ୍ରଣ ଆନ୍ଦୋଳନ ହେଉ ସବୁଥିରେ ସକ୍ରୀୟ ଯୋଗଦାନ କରି, ପ୍ରତ୍ୟେକଟିରେ ନିଜର ଅମୂଲ୍ୟ ଅବଦାନ ଦେଇ ଯାଇଛନ୍ତି ସେ ।

ମୋର କାର୍ଯ୍ୟକୁଶଳତା ଦେଖିବା ପୂର୍ବରୁ ୧୯୬୪ ମସିହା ଅପ୍ରେଲ ୨ ତାରିଖ ମଧ୍ୟରାତ୍ରିରେ ବାପା ମୋର ଏ ଜଗତର ବନ୍ଧନ ତୁଟାଇ ଆରପାରିକୁ ଚାଲିଗଲେ । ମୁଁ ତାଙ୍କର ପଦାଙ୍କ ଅନୁସରଣ କରି ଜୀବନରେ ବହୁ ସଫଳତା ପାଇଛି । ତଥାପି ବାପାଙ୍କ ବିହୁନେ ସବୁ ଆଜି ବେଶ୍ ଖାଲି ଖାଲି ଲାଗୁଛି ।



# ସେଇ ଅମ୍ଳାନ୍ ପ୍ରତିଭାର ସ୍ମୃତିରେ

ବିଜୟ ଭୂଷଣ ମିଶ୍ର

ଏଇ ଦୁନିଆର ଅନେକ ଅନେକ ମଣିଷ କେବଳ ଆହାର-ନିଦ୍ରା-ଭୟ-ମୈଥୁନର ଚକ୍ରାବର୍ତ୍ତ ଭିତରେ ନିଜର ଦୁର୍ଲ୍ଲଭ ମଣିଷ ଜନ୍ମକୁ ଫିଙ୍ଗି ଦେଇଥାନ୍ତି । କିନ୍ତୁ, କିଛି ମଣିଷବି ଜନ୍ମ ହୁଅନ୍ତି ଯିଏ କିଛି ଲକ୍ଷ ନେଇ ବଂଚନ୍ତି କିଛି ଲକ୍ଷ ନେଇ ମରନ୍ତି । ସେମାନଙ୍କୁ ଉତ୍ତର ପିଢିର ମଣିଷ ମନେ ପକାନ୍ତି । ସେମାନଙ୍କ ସ୍ମୃତି ଅଲିଭା ପ୍ରଦୀପ ପରି । ମନ ଅଙ୍ଗନରେ ଚିର ଜାଜ୍ୱଲ୍ୟମାନ । ପରହିତରେ ଜୀବନକୁ ପଳପଳକରି ଉତ୍ସର୍ଗ କରିଦେବାର ମଣିଷ । ନିଜ ଦୁଃଖରେ ହସି ପର ଦୁଃଖରେ କାନ୍ଦିବାର ମଣିଷ । ସତରେ କିପରି ଏମିତି ମଣିଷ ଜନ୍ମ ନିଅନ୍ତି ? କିପରି ତାଙ୍କର ପିତାମାତା ? କିପରି ତାଙ୍କର ସଂସ୍କାର ? ଜୀବନର କ୍ରମବିକାଶର ସିଡିରେ ସତରେ କେତେ ଉଚ୍ଚକୁ ଉଠିପାରିଥିବା ସେଇ ମଣିଷ ? ଈଶ୍ୱରଙ୍କର ଅନବଦ୍ୟ ସୃଷ୍ଟି !

ମଣିଷ-ଇତିହାସର ଏକ ସମୟରେ ତାର ସଂଜ୍ଞା ନିରୂପିତ ହେଉଥିଲା ଏକ Laughing Animal ଭାବରେ । ଅର୍ଥାତ ଜୀବଜଗତରେ ମଣିଷ ଏକାଇ ହସିପାରେ । ହେଲେ ବି ହସାଇ ପାରିବାର ମଣିଷ ଅତି ଅତି ବିରଳ । ମଣିଷ ଯେ ନିଜେ ଭଲ ଅବସ୍ଥାରେ ଥିଲେ ଅନ୍ୟ ମଣିଷଂକୁ ତା କଥାରେ ହସାଇପାରେ,ତା ନୁହେଁ । ଖୁବ୍‌ଭଲ ଅବସ୍ଥାରେ ଥିବା ମଣିଷ ବି ହସି ପାରଂତିନି ହସାଇ ପାରଂତିନି । ଅଥଚ କିଛି ଏପରି ବିରଳ ମଣିଷ ଥାନ୍ତି ସବୁ ଦୁଃଖ ବେଦନା, କ୍ଷୋଭ ନୈରାଶ୍ୟ, ଜ୍ୱାଳା ଯନ୍ତ୍ରଣାକୁ ନିଜ ଅନ୍ତରର କେଉଁ କୋଣରେ ଲୁଚାଇ ରଖି ହସର ଫୁଲଝରି ଫୁଟାଇ ଦିଅନ୍ତି । ଆନନ୍ଦର ଜୁଆରୀ ଢେଉରେ ପୋତି ଦିଅନ୍ତି ପାଖର ମଣିଷକୁ - ଚିହ୍ନା ଅଚିହ୍ନା ସମସ୍ତଙ୍କୁ । ବେଦନାର ଚକା ଭଉଁରୀରେ ଉବୁଟୁବୁ ହେଉଥିବା ମଣିଷ ଯେପରି କୂଳକୁ ଉଠିଆସିବାର ଭରସା ପାଏ ସେଇ ବ୍ୟଙ୍ଗର ମଂଗକୁ ଧରି ଧରି । ନିରାଶ ମଣିଷର ଜୀବନର ଊଷର ମରୁରେ ଯେପରି ସବୁଜିମାର ବନ୍ୟା କିଏ ହଠାତ୍ ଛୁଟାଇ ଦେଲା । ଉଜୁଡା ବଗିଚାରେ ଯେପରି ଅଚାନକ ବସନ୍ତର ଫୁଲ ସବୁ ଫୁଟି ଉଠିଲେ । ଏ ମଣିଷ କିନ୍ତୁ ଏପରି ସେପରି ମଣିଷ

ଭାଷଣ । ମହାଭାରତରେ ବୀର ଭୀମସେନ କାନ୍ଧରେ ଗଦାଧରି କୁରୁକ୍ଷେତ୍ର-ରଣକ୍ଷେତ୍ରରେ ମାଡ଼ିଚାଲିବା ପରି ସେ ମାଡ଼ି ଚାଲୁଥିଲେ ଭାଷଣର ସଂଗ୍ରାମକ୍ଷେତ୍ରେ । ସୀମା ଆନ୍ଦୋଳନରେ ଓଡ଼ିଶାର ଏକ ପ୍ରାନ୍ତରୁ ଅନ୍ୟପ୍ରାନ୍ତ ଯାଏ ସେ ଶୁଣାଉଥିଲେ ଓଡ଼ିଶା ମାତାର ବିଚ୍ଛିନ୍ନ ଅଞ୍ଚଳକୁ ଏକ କରିବାର 'ସଂକଳ୍ପ' ଘୋଷଣା । କେତେ ଦୃପ୍ତଥିଲା ସେ ଆହ୍ୱାନ । ସ୍ୱାଧୀନତା ସଂଗ୍ରାମ ହେଉ ବା ଦେଶ ମିଶ୍ରଣ ଆନ୍ଦୋଳନ ହେଉ ସବୁଥିରେ ସକ୍ରିୟ ଯୋଗଦାନ କରି, ପ୍ରତ୍ୟେକଟିରେ ନିଜର ଅମୂଲ୍ୟ ପଦାଙ୍କ ରଖି ଯାଇଛନ୍ତି ସେ ।

ମୋର କାର୍ଯ୍ୟକୁଶଳତା ଦେଖିବା ପୂର୍ବରୁ ୧୯୬୪ ମସିହା ଅପ୍ରେଲ ୨ ତାରିଖ ମଧ୍ୟରାତ୍ରିରେ ବାପା ମୋତେ ଏ ଜଗତର ବନ୍ଧନ ତୁଟାଇ ଆରପାରିକୁ ଚାଲିଗଲେ । ମୁଁ ତାଙ୍କର ପଦାଙ୍କ ଅନୁସରଣ କରି ଜୀବନରେ ବହୁ ସଫଳତା ପାଇଛି । ତଥାପି ବାପାଙ୍କ ବିହୁନେ ସବୁ ଆଜି ବେଶ୍ ଖାଲି ଖାଲି ଲାଗୁଛି ।



# ସେଇ ଅମ୍ଳାନ୍ ପ୍ରତିଭାର ସ୍ମୃତିରେ

ବିଜୟ ଭୂଷଣ ମିଶ୍ର

ଏଇ ଦୁନିଆର ଅନେକ ଅନେକ ମଣିଷ କେବଳ ଆହାର-ନିଦ୍ରା-ଭୟ-ମୈଥୁନର ଚକ୍ରାବର୍ତ୍ତ ଭିତରେ ନିଜର ଦୁର୍ଲ୍ଲଭ ମଣିଷ ଜନ୍ମକୁ ଫିଙ୍ଗି ଦେଉଥାନ୍ତି । କିନ୍ତୁ, କିଛି ମଣିଷବି ଜନ୍ମ ହୁଅନ୍ତି ଯିଏ କିଛି ଲକ୍ଷ ନେଇ ବଂଚନ୍ତି କିଛି ଲକ୍ଷ ନେଇ ମରନ୍ତି । ସେମାନଙ୍କୁ ଉତ୍ତର ପିଢ଼ିର ମଣିଷ ମନେ ପକାନ୍ତି । ସେମାନଙ୍କ ସ୍ମୃତି ଅଲିଭା ପ୍ରଦୀପ ପରି । ମନ ଅଙ୍ଗନରେ ଚିର ଜାଜ୍ଜ୍ୱଲ୍ୟମାନ । ପରହିତରେ ଜୀବନକୁ ପଳପଳକରି ଉତ୍ସର୍ଗ କରିଦେବାର ମଣିଷ । ନିଜ ଦୁଃଖରେ ହସି ପର ଦୁଃଖରେ କାନ୍ଦିବାର ମଣିଷ । ସତରେ କିପରି ଏମିତି ମଣିଷ ଜନ୍ମ ନିଅନ୍ତି ? କିପରି ତାଙ୍କର ପିତାମାତା ? କିପରି ତାଙ୍କର ସଂସ୍କାର ? ଜୀବନର କ୍ରମବିକାଶର ସିଡିରେ ସତରେ କେତେ ଉଚ୍ଚକୁ ଉଠିପାରିଥିବା ସେଇ ମଣିଷ ? ଈଶ୍ୱରଙ୍କର ଅନବଦ୍ୟ ସୃଷ୍ଟି !

ମଣିଷ-ଇତିହାସର ଏକ ସମୟରେ ତାର ସଂଜ୍ଞା ନିରୂପିତ ହେଉଥିଲା ଏକ Laughing Animal ଭାବରେ । ଅର୍ଥାତ ଜୀବଜଗତରେ ମଣିଷ ଏକାଇ ହସିପାରେ । ହେଲେ ବି ହସାଇ ପାରିବାର ମଣିଷ ଅତି ଅତି ବିରଳ । ମଣିଷ ଯେ ନିଜେ ଭଲ ଅବସ୍ଥାରେ ଥିଲେ ଅନ୍ୟ ମଣିଷଂକୁ ତା କଥାରେ ହସାଇପାରେ,ତା ନୁହେଁ । ଖୁବ୍‌ଭଲ ଅବସ୍ଥାରେ ଥିବା ମଣିଷ ବି ହସି ପାରଂତିନି ହସାଇ ପାରଂତିନି । ଅଥଚ କିଛି ଏପରି ବିରଳ ମଣିଷ ଥାନ୍ତି ସବୁ ଦୁଃଖ ବେଦନା, କ୍ଷୋଭ ନୈରାଶ୍ୟ, ଜ୍ୱାଳା ଯନ୍ତ୍ରଣାକୁ ନିଜ ଅନ୍ତରର କେଉଁ କୋଣରେ ଲୁଚାଇ ରଖି ହସର ଫୁଲଝରି ଫୁଟାଇ ଦିଅନ୍ତି । ଆନନ୍ଦର ଜୁଆର ତୋଡରେ ପୋତି ଦିଅନ୍ତି ପାଖର ମଣିଷକୁ - ଚିହ୍ନା ଅଚିହ୍ନା ସମସ୍ତଙ୍କୁ । ବେଦନାର ଚକା ଭଉଁରୀରେ ଉବୁଟୁବୁ ହେଉଥିବା ମଣିଷ ଯେପରି କୂଳକୁ ଉଠିଆସିବାର ଭରସା ପାଏ ସେଇ ବ୍ୟଙ୍ଗର ମଂଗକୁ ଧରି ଧରି । ନିରାଶ ମଣିଷର ଜୀବନର ଉଷର ମରୁରେ ଯେପରି ସବୁଜିମାର ବନ୍ୟା କିଏ ହଠାତ୍ ଛୁଟାଇ ଦେଲା । ଉଜୁଡା ବଗିଚାରେ ଯେପରି ଅଚାନକ ବସନ୍ତର ଫୁଲ ସବୁ ଫୁଟି ଉଠିଲେ । ଏ ମଣିଷ କିନ୍ତୁ ଏପରି ସେପରି ମଣିଷ

ନୁହଁନ୍ତି । ଦେବୋତ୍ତର ମଣିଷ । ଅନନ୍ୟ ସାଧାରଣ । ଏପରି ଜଣେ ମଣିଷ ଥିଲେ ଯଦୁମଣି ମଂଗରାଜ । ବିଂଶ ଶତାବ୍ଦୀର ଓଡିଶାର ପ୍ରବାଦ ପୁରୁଷ ।

ଆଗରୁ ଜନ୍ମ ନେଇଥିଲେ ଆମରି ମାଟିରେ ଆଉଜଣେ ଯଦୁମଣି -ପ୍ରବାଦ ପୁରୁଷ । ରସାଳ ବ୍ୟଙ୍ଗଧର୍ମ ବାକ୍ୟ ଓ କାବ୍ୟ ତାଂକର ଥିଲା ସମକାଳୀନ ସମାଜ ପାଇଁ ପ୍ରାଣସ୍ପର୍ଶୀ, ହୃଦୟ ଉନ୍ମାଦକ । ସେ ବି କାଳଜୟୀ ପୁରୁଷ ଥିଲେ । ସତେ ଯେପରି ସେଇ ରଥେ ଆଉ ଥରେ ଜନ୍ମନେଲେ ମଙ୍ଗରାଜ ରୂପରେ । ଯେପରି ତାଂକରି ଦ୍ୱିତୀୟ ସଂସ୍କରଣ ! କଣ ତାଂକର ପୂଜ୍ୟ,ଧନ୍ୟ ପିତାମାତା ପୁଅର ନାମକରଣ ସମୟରୁବି ତାର ଭାବୀ ସ୍ୱଭାବ - ଚରିତ୍ର ସଂପର୍କରେ ଜାଣି ସାରିଥିଲେ ? କିଂତୁ ଯଦୁମଣି ମଂଗରାଜ ଜନ୍ମ ହେଉଥିଲେ, ବଢିଥିଲେ ଏକ ସଂପୂର୍ଣ୍ଣ ଭାବେ ଭିନ୍ନ ମାନସିକତାର ଯୁଗରେ । ଯେତେବେଳେ ବିଦେଶୀ ଶାସନର ଶୃଙ୍ଖଳ ପିନ୍ଧିଥିଲା ଏ ଦେଶର ଲୋକ । ଯେତେବେଳେ ଅନ୍ନବସ୍ତ୍ର ଆଶ୍ରୟର ଆଉ ପ୍ରାଚୁର୍ଯ୍ୟ ନଥିଲା । ସମାଜ ଜୀବନ ଆଉ ସହଜ ସାଧାରଣ ନ ଥିଲା । ଶାସକ ଓ ପ୍ରଜା ଭିତରେ ସଂଘର୍ଷର ବାତାବରଣ ଲାଗି ରହିଥିଲା । ତଦ୍‌ଜନିତ ଯାବତୀୟ ଅଶାନ୍ତି , ଆଶଂକା ଉଦ୍‌ବେଗର କଳାମେଘ ଯେତେବେଳେ ସାଧାରଣ ବ୍ୟକ୍ତି ଓ ସମଷ୍ଟିର ମନଆକାଶକୁ ଗ୍ରାସ କରି ରଖିଥିଲା - ସେଇ ସମୟର ମଣିଷ ଯଦୁମଣି ମଙ୍ଗରାଜ ।

ନିଜେ ବି ଭଲପାଠ ପଢୁଥିବା ସତ୍ତ୍ୱେ ଅନ୍ୟମାନଙ୍କ ପରି ଉଚ୍ଚପଦବୀ ପଛରେ ଧାଇଁବାକୁ ଚାହିଁ ନଥିଲେ । ଆରାମ୍ ଅୟସରେ ଜୀବନ କଟାଇବା ପାଇଁ । ଗୋଲାପର ଶେଯ ନୁହେଁ । କଣ୍ଟକର ରାସ୍ତା ଆପଣେଇ ନେଇଥିଲେ । ଜାଣି ଜାଣି । କାରଣ ସେ ନିଜପାଇଁ ନୁହେଁ । ଅନ୍ୟମାନଙ୍କ ପାଇଁ ଜୀଇଁବାକୁ ଚାହିଁଥିଲେ । ସମୟର ସୀମା ସେପାରିର ଜୀବନ ଖୋଜିଥିଲେ । ମୃତ୍ୟୁକୁ ଜୟ କରିବାର ସ୍ୱପ୍ନ ଦେଖିଥିଲେ । ସେଇ ସମୟର ମଣିଷ ଜୀବନର ପ୍ରାଙ୍ଗଣରେ ଯେତେବେଳେ ହସ କ୍ରମଶଃ ସମାଧି ନେଉଥିଲା । ସ୍ୱାଧୀନତା ସଂଗ୍ରାମର ବ୍ୟସ୍ତ ସୈନିକ, ରକ୍ତାକ୍ତ ସଂଗ୍ରାମୀ, ଜୀବନ ସଂଗ୍ରାମର ପୀଡ଼ିତ ଯୋଦ୍ଧା ଯଦୁମଣି କିନ୍ତୁ ଯୁଥାଡ଼େ ଯାଉଥିଲେ - ପରିଚିତ କି ଅପରିଚିତ ଯେଉଁ ମଣିଷଂକ ମେଳରେ ପହଂଚୁଥିଲେ, ହସର ପ୍ଲାବନରେ ପୋତିଦେଉଥିଲେ ସମସ୍ତଙ୍କୁ । ଶତ୍ରୁ ମିତ୍ର କେହି ବାଦ୍ ପଡୁନଥିଲେ ସେଇ ପ୍ଲାବନରୁ ।

ମଣିଷ ସବୁବେଳେ ଭଲପାଏ ହସିବାକୁ । କାନ୍ଦିବାକୁ କେହି ଭଲ ପାଏନି । ତା ବୋଲି ସେ ସବୁବେଳେ ଯେ ହସି ପାରିବ , ସବୁ ଅବସ୍ଥାରେ , ଏ ଶକ୍ତି ସାଧାରଣ ମଣିଷ ପାଖରେ ଥାଏନା । ତେଣୁ, ଯେ ସବୁ ଅବସ୍ଥାରେ, ଦୁର୍ଯୋଗରେ ବି, ପ୍ରତିକୂଳ ପରିସ୍ଥିତି ଭିତରେ ବି, ବୀପରିତ ସ୍ରୋତକୁ ଅତିକ୍ରମ କରୁଥିବା ଅବସ୍ଥାରେ ମଧ, ନିଜେ ହସିପାରେ ତଥା ଅନ୍ୟକୁବି ହସାଇପାରେ । ସେ କଣ ଅସାଧାରଣ ମଣିଷ ନୁହେଁ ? ଯଦୁମଣି ମଙ୍ଗରାଜଥିଲେ ସେଇପରି ଜଣେ ଅସାଧାରଣ ମଣିଷ ! ଠିକ୍ ସେଇଭଳି, ଜୀବନରେ ବ୍ୟଙ୍ଗଧର୍ମୀ ହୋଇ ପାରିବା ବି ସହଜ କଥା ନୁହେଁ । ଯଦି ଏହା ଜଣକଂର attitude of life ବା ମାନସିକତାରେ ପର୍ଯ୍ୟବସିତ ହୋଇଉଠେ - ସେ ନିଶ୍ଚୟ ସତ୍ୟଦର୍ଶୀ । କାରଣ, ସବୁକଥା ଭିତରେ oddity ବା ତ୍ରୁଟିବିଚ୍ୟୁତି ତାର ନଜରରେ ପଡ଼ିଯାଏ । ଯାହା ସତ୍ ବା ଚିରଂତନ ବା ଠିକ୍ ସେଥିରୁ deviation ବା ଅନ୍ତରକୁ ସେ ସହଜରେ ଲକ୍ଷ୍ୟ କରିପାରେ । ସେଥିପାଇଁ ନିଜେ ଠିକ୍ ରହିବା ଦରକାର । ଠିକ୍ ମଣିଷ ପ୍ରଥମେ ନିଜକୁ ହେବାକୁ ହୁଏ । ଏହା କ୍ୱଚିଦ୍ ଲୋକଙ୍କର ଭାଗ୍ୟରେ ଥାଏ । ତାଂକ ଭାଗ୍ୟ ହୁଏତ ତାଂକର ପ୍ରତିଭା ଆନୁପାତିକ ତାଙ୍କୁ ସମକାଳୀନ ସାମାଜିକ ରାଜନୈତିକ ସୋମାନର ଶୀର୍ଷରେ ପହଂଚାଇ ପାରି ନଥିଲା । କିନ୍ତୁ ଏକ ବିରଳ ଭାଗ୍ୟରେ ଅଧିକାରୀ ସେ ଥିଲେ । ସମସ୍ତଙ୍କୁ ସେ ଭଲପାଉଥିଲେ । ସମସ୍ତେ ତାଂକୁ ଭଲପାଉଥିଲେ । ଦଳମତ, ଉଚ୍ଚନୀଚ ନିର୍ବିଶେଷରେ । ଏଥିରୁ କଣ ଆଜିକାର ନେତୃବୃନ୍ଦଙ୍କର କିଛି ଶିଖିବାର ନାହିଁ ? ପାଇବା ଆଉ ଆମେ ଆଜିର ସମୟରେ ଏପରି ମଣିଷଟିଏ ? କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର । ଯାର ପ୍ରାପତି ପାଇଁ ଦେବତା ନର !

ଆମରି ଯୁଗର ଏହି ଅମ୍ଳାନ୍ ବ୍ୟକ୍ତିତ୍ୱର ସଂପର୍କରେ ଯେ ଏଇ ଲେଖକ - ବୟସରେ ତାଂକୁଠୁ ଅନେକ ଅନେକ ବର୍ଷ ସାନ ହେଲେ ବି - ମୋଟେ ଆସି ନଥିଲା ତା ନୁହେଁ । ଆମେ ସବୁ ପଚାଶ ଦଶକର ଶେଷ ଭାଗରେ ତଥା ଷାଠିଏ ଦଶକର ଆରମ୍ଭ କାଳରେ ତାଂକୁ ଆମ ରେଭେନ୍ସା କଲେଜକୁ ବିଭିନ୍ନ ସାଂସ୍କୃତିକ ସମାରୋହରେ ଯୋଗଦେଇ ଆମକୁ ହସେଇବାକୁ ବାରଂବାର ନିମନ୍ତ୍ରଣ କରିଛୁ ଓ ସେ ଆସିଛନ୍ତି ମଧ । ତାଂକ ବ୍ୟକ୍ତିତ୍ୱ ସହିତ ବ୍ୟଙ୍ଗାତ୍ମକ ମାନସିକତାର ଏପରି ସଂଙ୍ଗମ ଥିଲା ଯେ ସେ କିଛି କହିବା ପୂର୍ବରୁ, ମଂଚକୁ ଉଠିବା ପୂର୍ବରୁ ଇ ତାଂକୁ ଦେଖିଲାମାତ୍ରେ ସମସ୍ତେ ହସିଉଠୁଥିଲେ । ହସର ହିଲ୍ଲୋଳ

ଖେଳିଯାଉଥିଲା । ଚାରିଆଡ଼େ । ତାଙ୍କର ତୁଳନା ହିସାବରେ ସମକାଳୀନ ଓଡ଼ିଆ କବି ଓ ଲେଖକ ଭାବରେ ଆମେ ଆଉ କି ଜଣଙ୍କୁ ଚିନ୍ତା କରିପାରୁଥିଲୁ - ଗୋଦାବରୀଶ ମହାପାତ୍ର ଓ ସଚ୍ଚିରାଉତରାୟ । ସେମାନେ ବି ତୁଲ୍ୟ ଅମ୍ଳାନ ପ୍ରତିଭାର ଜ୍ୱଳନ୍ତ ବର୍ତ୍ତିକା ।

ଆଜିର ହସି ନ ପାରୁଥିବା ମଣିଷ ପାଇଁ ପୁଣି ଜଣେ ଯଦୁମଣି ମହାପାତ୍ର ଦରକାର । ସେ ବି ଅଛନ୍ତି କିନ୍ତୁ ତାଙ୍କର ସ୍ଥାନ ଓଡ଼ିଆ ସମାଜରେ ଅପୂରଣୀୟ ରହିବା କାରଣ ସେ ଥିଲେ ଯୋଗୀଙ୍କ । ସବୁବେଳେ ଭଗବାନ୍ ଏପରି ମଣିଷଙ୍କୁ ବୁଣିଥାନ୍ତି ପଚାଶିକି ବର୍ଷକୁ ଥରୁଟିଏ ସେଇ ଅବିସ୍ମରଣୀୟ, ଚିର ଆଦରଣୀୟ ବ୍ୟକ୍ତିଙ୍କର ସ୍ମୃତିର ପବିତ୍ର ଗଙ୍ଗା ଜଳରେ ଅବଗାହନ କରି — କିଛି ଶିଖି, କିଛି ଅନୁକରଣ କରି ନିଜର କାୟା ଓ ମନକୁ ଥରେ ପରିଶୋଧିତ କରାଇନେବାର ସୁଯୋଗ ଯିଏ ସବୁ ଆମକୁ ଦେଇଛନ୍ତି ସେମାନଙ୍କୁ ମୁଁ ନମସ୍କାର କରେ ।



# ଅଲିଭା ଦୀପ ଶିଖା

**ଅଧ୍ୟାପକ ବିଷ୍ଣୁ ପ୍ରସାଦ ବାହାଲିଆ**

ଭାରତର ସ୍ୱାଧୀନତା ସଂଗ୍ରାମରେ ଯେଉଁ ଉତ୍କଳୀୟ ନେତୃବୃନ୍ଦ ସମ୍ମୁଖ ଭାଗରେ ରହି ଦିଗ୍‌ଦର୍ଶନ ଦେଉଥିଲେ ସେମାନଙ୍କ ମଧ୍ୟରେ ଯଦୁମଣି ମଙ୍ଗରାଜ ଥିଲେ ଅନ୍ୟତମ । ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି କାରାରୁଦ୍ଧ ହେବା ବ୍ୟତୀତ ବହୁବାର ବିଭିନ୍ନ ଆନ୍ଦୋଳନରେ ନିଜକୁ ସଂପୃକ୍ତ କରାଇ କାରାବରଣ କରିଥିଲେ । ଉତ୍କଳ ପ୍ରଦେଶରେ ଜନ ମାନସରେ ଗାନ୍ଧିଜୀଙ୍କ ବାର୍ତ୍ତା ଓ କଂଗ୍ରେସର ନିର୍ଦ୍ଦେଶକୁ ସଂଫଳ ଭାବେ ପରିପ୍ରଚାର କରି ଯଥେଷ୍ଟ ଜନପ୍ରିୟତା ଲାଭ କରିଥିଲେ । ତାଙ୍କର ସ୍ପଷ୍ଟବାଦିତା, ନିର୍ଭୀକତା ଓ ସ୍ୱାଧୀନ ଚିନ୍ତାଧାରା ପାଇଁ ସେ କଂଗ୍ରେସରୁ ନିଜକୁ ଦୂରେଇ ରଖିବାର ଦୃଷ୍ଟାନ୍ତ ମଧ୍ୟ ରହିଛି । ପରବର୍ତ୍ତୀ କାଳରେ ସେ ପାରଳା ମହାରାଜାଙ୍କ ମନ୍ତ୍ରୀମଣ୍ଡଳରେ ଅର୍ଥନୈତିକ ସେକ୍ରେଟାରୀ ଭାବରେ କାର୍ଯ୍ୟକରିଥିଲେ । ସ୍ୱାଧୀନତା ପ୍ରାପ୍ତି ପରେ ଓଡିଶା ବିଧାନ ସଭାରେ ସେ ଉପ-ବାଚସ୍ପତି ପଦବୀରେ ନିଜକୁ ଅଧିଷ୍ଠିତ କରାଇ ପାରିଥିଲେ । ସେତେବେଳେ ପଣ୍ଡିତ ନୀଳକଣ୍ଠ ବାଚସ୍ପତି ଥିଲେ ମଧ୍ୟ ଅସୁସ୍ଥତା ବଶତଃ ଅନୁପସ୍ଥିତ ରହୁଥିବାରୁ ମଙ୍ଗରାଜଙ୍କୁ ବାଚସ୍ପତିର ଭୂମିକା ସୁଚାରୁରୂପେ ନିର୍ବାହ କରିଥିବା କାରଣରୁ ବିଧାନସଭାର ସମସ୍ତ ସଭ୍ୟଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ସାଲିସ୍ ଓ ମାଲିସ୍ ଏ ଦୁଇଟି ଶବ୍ଦର ସଠିକ ପ୍ରୟୋଗ କରି ନପାରି ନେତୃବୃନ୍ଦଙ୍କ ସହିତ ବିରୋଧାଭାଷର ସମ୍ମୁଖୀନ ହୋଇ ତାଙ୍କର ଯୋଗ୍ୟତା ଓ ଦକ୍ଷ୍ୟତା ଅନୁରୂପ ଉପଯୁକ୍ତ ରାଜନୈତିକ ପଦପଦବୀ ପ୍ରାପ୍ତିରୁ ବଞ୍ଚିତ ହୋଇଥିଲେ ।

ପ୍ରଚଣ୍ଡ ପ୍ରତିଭାଧର ମଙ୍ଗରାଜ ଜେଣ ସୁଦକ୍ଷ୍ୟ ବାଗ୍ମୀ ଭାବରେ ନିଜକୁ ପ୍ରତିଷ୍ଠିତ କରାଇଥିଲେ । ୧୯୪୮ ମସିହାରେ କଟକର ଗୌରୀଶଙ୍କର ପାର୍କରେ ଆନ୍ଧ୍ରପ୍ରଦେଶକୁ ଦୀର୍ଘମିଆଦୀ ସୂତ୍ରରେ ଡୁଡୁମା ଜଳବିଦ୍ୟୁତ ପ୍ରକଳ୍ପକୁ ଲିଜ୍ ଦେବା ବିରୁଦ୍ଧରେ ଅନୁଷ୍ଠିତ ହେଉଥାଏ ପ୍ରତିବାଦ ସଭା । ତହିଁରେ ଓଜସ୍ୱିନୀ ଭାଷଣ ଦେଇ ଯେପରି ଉପସ୍ଥିତ ଜନତାଙ୍କୁ

ଉନ୍ନତ କରିପାରିଥିଲେ ତାହା ଆଜି ମଧ୍ୟ ମୋ ସ୍ମୃତିପଟରେ ସତେଜ ରହିଅଛି । ତାଙ୍କର ଭାଷା, କଥନ ଶୈଳୀ, ବ୍ୟଙ୍ଗ ବିଦ୍ରୂପ ସବୁ ଥିଲା ସ୍ୱତନ୍ତ୍ର ଅନନ୍ୟ, ଓ ଜନ ମାନସକୁ ଉଦ୍‌ବେଳିତ କରିବାର ସଫଳ ରୂପାୟନ । ଠିକ୍ ସେଇ ରୂପ ଓ ସେଇ ଆଭିମୁଖ୍ୟର ଝଲକ ପରିଦୃଷ୍ଟ ହୋଇଥିଲା । ୧୯୫୬ର ସୀମା ଆନ୍ଦୋଳନରେ । କ୍ରିୟାନୁଷ୍ଠାନ କମିଟିରେ ତାଙ୍କ ସହିତ ମୁଁ ମଧ୍ୟ ଜଣେ ସଦସ୍ୟ ଥିଲି । ବାର୍ଦ୍ଧକ୍ୟରେ ମଧ୍ୟ ତାଙ୍କଠାରେ ଯୁବ ସୁଲଭ ଉନ୍ମାଦନା ପରିଲକ୍ଷିତ ହୋଇଥିଲା ଏବଂ ଆମେ ଯୁବକମାନେ ତାଙ୍କ ଦକ୍ଷ ପରିଚାଳନା ଓ ନିର୍ଦ୍ଦେଶନାରେ ଉକ୍ତ ଆନ୍ଦୋଳନକୁ ଦୀର୍ଘକାଳ ଚଳାଇ ରଖିବାର ସମର୍ଥ ହୋଇଥିଲୁ ।

୧୯୬୧ ମସିହାରେ ମୋ ବଦଳରେ ତାଙ୍କୁ ରାଜନଗର ନିର୍ବାଚନ ମଣ୍ଡଳୀର କଂଗ୍ରେସ ପ୍ରାର୍ଥୀ କରାଗଲା ଓ ମୁଁ ତାଙ୍କ ନିର୍ବାଚନର ମୂଖ୍ୟ ପରିଚାଳକ ଭାବରେ କାର୍ଯ୍ୟ କରି ତାଙ୍କର ଘନିଷ୍ଠ ସାନ୍ନିଧ ଲାଭ କରିଥିଲି । ସେଇ ସୁଯୋଗରେ ମୁଁ ତାଙ୍କୁ ପଚାରିଥିଲି - ମଉସା, ଆପଣ କଂଗ୍ରେସ ସଂସ୍କୃତିର ଲୋକ ହୋଇ ଖଣ୍ଡାୟତ କ୍ଷତ୍ରିୟ ମହାସଂଘ ଗଠନ କରି ନାୟକ ପତ୍ରିକା ଛାପି ଜାତିଆଣା ଭାବ ସୃଷ୍ଟି କରୁଛନ୍ତି କାହିଁକି ? ସେ ମୋତେ ଉତ୍ତର ଦେଲେ ମୁଁ ତ ବିଜ୍ଞାନର ଛାତ୍ର ଥିଲି, ତେଣୁ ମୋ ଅପେକ୍ଷା ଓଡିଶାର ଇତିହାସ ତୁ ଅଧିକ ଜାଣିଥିବୁ । କଳିଙ୍ଗ ଯୁଦ୍ଧଠାରୁ ଆରମ୍ଭ କରି କାଞ୍ଚି-କାବେରୀ ଯୁଦ୍ଧ ପର୍ଯ୍ୟନ୍ତ କଳିଙ୍ଗ ଓ ଉତ୍କଳ ସାମ୍ରାଜ୍ୟର ଗୌରବ ଗରିମା ପାଇଁ ଯେତେ ଯୁଦ୍ଧ ବିଗ୍ରହ ଘଟିଯାଇଛି ସେଥିରେ ସର୍ବାଧିକ ଅବଦାନ ଏଇ ଖଣ୍ଡାୟତ କ୍ଷତ୍ରୀୟଙ୍କର ଥିଲା । ମୋଗଲ, ମରହଟ୍ଟା ଓ ଇଂରେଜମାନେ ସ୍ୱାଧୀନତା ଛଡେଇ ନେବା ସଙ୍ଗେ ସଙ୍ଗେ ଏହି ଦୁର୍ଦ୍ଧର୍ଷ ଖଣ୍ଡାୟତ - କ୍ଷତ୍ରିୟମାନଙ୍କୁ ଦୁର୍ଦ୍ଦଶା ମଧ୍ୟକୁ ଠେଲିଦେଲେ । କ୍ରମେ ସେମାନେ ଦୁର୍ବଳ ଓ ଦରିଦ୍ର ହେଲେ । ବିଭିନ୍ନ ରାଜୁତି ସମୟରେ ଦେବ ପୂଜା ପାଇଁ ବିଦେଶରୁ ଅଣା ଯାଇଥିବା ବ୍ରାହ୍ମଣମାନେ ଧର୍ମର ଦ୍ୱାହି ଦେଇ ଜାତି ଶ୍ରେଷ୍ଠ ଭାବରେ ନିଜକୁ ପ୍ରତିପାଦିତ କଲେ । ଆଉ ଦଳେ ଲୋକ ଶାସକ ମାନଙ୍କର ଗୋଡାଣିଆ ହୋଇ କିରାଣୀରୁ କରଣ ହୋଇଗଲେ । ତୁ ଜାଣିଛୁ, ଏ ମାନଙ୍କର ସଂଖ୍ୟା ଶତକଡା ୧୫ କି ୨୦ । ଅଥଚ ଆଜି ସେମାନେ ସ୍ୱାଧୀନ ଦେଶରେ ଶତକଡା ୮୦ ଭାଗ ସୁବିଧା ସୁଯୋଗ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ହାସଲ କରିଛନ୍ତି । ଆମେ ୮୦ ଭାଗ ଲୋକ ୨୦ଭାଗ ସୁବଧା ସୁଯୋଗ ପାଉଛୁ । ତେଣୁ ଏହି ଅବହେଳିତ

ଗୋଷ୍ଠୀକୁ ସବୁକ୍ଷେତ୍ରରେ ପ୍ରତିଷ୍ଠିତ କରାଇବା ପାଇଁ ପାଇକ ଆଖଡା ଭଳି ଚିରାଚରିତ ରଣ କୌଶଳରେ ପୁନର୍ବାର ପ୍ରଶିକ୍ଷିତ କରିବା କଣ ଜାତିଆଣ ଭାବ ? ସେମାନଙ୍କର କାର୍ଯ୍ୟକଳାପ ବରଂ ଜାତିଆଣା ଭାବଦ୍ୱାରା ପରିପୁଷ୍ଟ । ମୋର କିନ୍ତୁ କୌଣସି ଜାତି ବିଦ୍ୱେଷ ନାହିଁ ।

ଜାତୀୟ କଂଗ୍ରେସକୁ ଓଡିଶାର ପୂରପଲ୍ଲୀରେ ପ୍ରସାରିତ କରିବା, ଉତ୍କଳ ସମ୍ମିଳନୀ ମାଧ୍ୟମରେ ଓଡିଶା ବାହାରେ ଥିବା ଓଡିଆ ଅଞ୍ଚଳକୁ ଫେରାଇ ଆଣିବା ପାଇଁ ତାଙ୍କର ଅବଦାନ, ପ୍ରତ୍ୟେକ ଓଡିଆ ସ୍ୱୀକାର କରିବେ । ସେ ଦିନର ପ୍ରତିଭାବାନ ଛାତ୍ର ନିଜ ସ୍ୱାର୍ଥ ଓ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ପ୍ରୟାସୀ ନ ହୋଇ ତ୍ୟାଗ ଓ ସଂଘର୍ଷର ପଥ ବାଛିନେଇ ଦେଶ ଓ ଜାତି ପାଇଁ ନିଜକୁ ଉତ୍ସର୍ଗ କରିଦେଲେ । ଏପରି ଜଣେ ଦୃଢମନା, ନିର୍ଭିକ, ସ୍ପଷ୍ଟବାଦୀ, ସଂଗ୍ରାମୀ ଓ ବିଚକ୍ଷଣ ବାଗ୍ମୀ ସର୍ବତ୍ର ବିରଳ । ପରିତାପର ବିଷୟ ଅଦ୍ୟାବଧି ଏଭଳି ଜଣେ ଜନନେତାଙ୍କର ସ୍ମୃତିପାଇଁ ସରକାରୀ ଅଥବା ବେସରକାରୀ ସ୍ତରରେ କୌଣସି ଉଦ୍ୟମ ହୋଇପାରି ନାହିଁ ।

ସେ ଏକ ଅଲିଭା ଦୀପ ଶିଖା ଜଳୁଛି, ଜଳୁଥାଉ ।



# ପାରନ୍ତୁ କି ଥରେ ସ୍ୱର ଶୁଣି

ଡ଼ଃ ଶ୍ରୀମତୀ ମୀନାକ୍ଷୀ ଦାସ

ଜନନେତା ବୀର ଯଦୁମଣି !
ସରଳତା ଗୁଣେ ନିର୍ଭିକ ପଣେ,
ମାନବ ହୃଦୟ ଗଲ ଜିଣି । ୧ ।

ମରତରେ ଥିଲ ଅବତରି
ଦେବତା କି ହେବେ ତୁମ ସରି !
ଆଙ୍କିଦେଇଗଲ ଅଳିଭା ଚିହ୍ନ,
ତୁମ ଚଲାପଥ ହେଉ ଗୁଣି । ୨ ।

ବାଗ୍ମୀତା ବଳରେ ବଳୀୟାନ,
ମାନବତା ଗୁଣେ ମହୀୟାନ;
ହୋଇଛି ଜୀବନ ଅବସାନ,
ସାର୍ଥକ ଜନମ ଗୁଣମଣି । ୩ ।

କେନ୍ଦ୍ରପଡା ମାଟି କଲ ଧନ୍ୟ,
ମଙ୍ଗରାଜ ବଂଶ ହେଲା ଗଣ୍ୟ;
ଆମେ ଖୋଜୁ ଆଜି ଉଥର ରାଜ୍ୟରେ,
ପାରନ୍ତୁ କି ଥରେ ସ୍ୱର ଶୁଣି । ୪ ।



# ଧନ୍ୟ ତୁମେ

ବୀଣାପାଣି ସାହୁ

ଧନ୍ୟ ସେ କରିଲୋ ପାଟଣା ଗ୍ରାମ,
ଯାହାରି ବୁକୁରେ ଜନ୍ମନେଇ ତୁମେ
ଉଜ୍ଜ୍ୱଳ କଲ ଉତ୍କଳ ଜନନୀର ନାମ ।
ଧନ୍ୟ ସେ ଉତ୍କଳ ମାଟି,
ଯଦୁମଣି ସମ ନିର୍ଭିକ ସନ୍ତାନ ଯାହାର
ସାରାଦେଶେ ପରିଚିତ ତାର ନାଁଟି ।
ଧନ୍ୟ ସେ ବୀର ଓଡିଆ ଜାତି,
ବାଗ୍ମୀପ୍ରବର ବୀରପୁତ୍ର ଲଭି
ଅମ୍ଳାନ ଅକ୍ଷରେ ଲେଖିଛି ସ୍ୱକିର୍ତ୍ତୀ ।
ଧନ୍ୟ ସେ ଜନନୀ ପୁଣ୍ୟ ପ୍ରଭାମୟୀ,
ଜଠରୁ ଯାହାର ଜନ୍ମ ଲାଭ କରି
ଉଜ୍ଜଳ କଲ ଦେଶ ମାଟି ଭୂଇଁ ।
ଧନ୍ୟ ସେ ବିଧାନ ସଭାର ଆସନ,
ଚୁପ୍ ହୋଇଯାଏ ସଭାକକ୍ଷ ପୁଣି
ମଙ୍ଗରାଜେ କହୁଛନ୍ତି ଶୁଣ ଦେଇଧ୍ୟାନ ।
ଧନ୍ୟ ତୁମ ପୁତ୍ର, ଧନ୍ୟ ପୁଣି କନ୍ୟା,
ଉଜ୍ଜିବିତ ତୁମେ ଏବେ ତାଙ୍କ ମଧ୍ୟେ
ବିଚ୍ଛେଦ ସ୍ମୃତିରେ ହୃଦେ ଅଶ୍ରୁବନ୍ୟା ।
ଧନ୍ୟ ଏହି ଜାତି ଭୁଲିନି ପୁତ୍ରକୁ,
ଶ୍ରଦ୍ଧାଞ୍ଜଳୀ ଦିଏ ଯୋଡି କରପତ୍ର
ଆଜିର ଦିବସେ ସ୍ମରି ସେ ତୁମକୁ ।



# ଆଜିବି ଖୋଜୁଛୁ

ସୁଚେତା ରାଉତ

ଆଜିବି ଖୋଜୁଛୁ ଆମେ
ତୁମକୁ ଯଦୁମଣି,
ଗିରିକନ୍ଦର, ବନ ସବୁ
ଖୋଜି ସାରିଲୁଣି ।
ରହିଛୁ ଆମେ ସିନା
ସ୍ୱାଧୀନ ଦେଶରେ,
ମନ କିନ୍ତୁ ରହିଅଛି
ପରାଧିନ ଭାରେ ।
ଦେଶକୁ ସ୍ୱାଧୀନ ସିନା
କରିଦେଇଗଲ,
ତୁମ ପରି ନିର୍ଭିକ ହେବା
ମନ୍ତ୍ର ନ ବତାଇଲ ।
ତୁମର ଅଭୁଲା ସ୍ମୃତିକୁ
ପାଥେୟ ଯେ କରି,



ଟାଣିନେଲୁ ଏତେବାଟ
ନଉକାର ଡ଼ୋରି ।
ଝଡ଼ଝଞ୍ଜା ମଧ୍ୟେ ସେ
ଡ଼ୋରି ହେଲାଣି ଦୁର୍ବଳ,
ନାହାନ୍ତି ତୁମ ପରି କେହି
ଟାଣୁଥା ମଙ୍ଗୁଆଳ ।
ଜୀବନ ନଉକା ଆମ
ବୁଡିଲାଣି ଯାହା,
ନାହାନ୍ତି କେହି ପାଶେ
ହେବାକୁ ତ ସାହା ।
ଆଉ ଥରେ ଜନ୍ମ ନେଇ
ବତାଅ ଯେ ବାଟ,
ଶିଖି ସେ ମନ୍ତ୍ର ଆମେ
ପାର ହେବୁ ଘାଟ ।



# ଅମୂଲ୍ୟ ରତ୍ନ ଯଦୁମଣି

ରାମଚନ୍ଦ୍ର ସୁବୁଦ୍ଧି

ଅମୂଲ୍ୟ ରତନ ଯଦୁମଣିଙ୍କ ନାମ,
ମନେ ରଖିଥାଅ ଭାଇ ସାରା ଜୀବନ ।୦।

ଉତ୍କଳର ପ୍ରାଣ ଦାତା, ଥିଲେ ସେ ମହାନ୍ ବକ୍ତା
ସୁବାଷ ଗାନ୍ଧିଙ୍କ ବାର୍ତ୍ତା ପାଇ କଲେ ସେ ସଂଗ୍ରାମ ।୧।

ସୁବାଷଙ୍କ ସହଚର କଂଗ୍ରେସର ସୂତ୍ରଧର
ପ୍ରତି ଘରେ ଗାନ୍ଧିଙ୍କର ନୀତିକୁ କଲେ ପ୍ରେରଣ । ୨ ।

ଏ ପ୍ରଚାର ବାର୍ତ୍ତା ଶୁଣି କମ୍ପିଲା ଓଡ଼ିଶା ଭୂଇଁ
ଯଦୁମଣି ବୀର ବାଣୀ ହୃଦୟ କଲା କମ୍ପନ । ୩ ।

ଯଦୁମଣିଙ୍କ ଭାଷଣ ଜ୍ୱଳନ୍ତ ଅଗ୍ନି ସମାନ
ଗୋରା ସରକାର ମନ ଯେସନେ ପତଙ୍ଗ ପ୍ରାଣ । ୪ ।

କୋଟି ଜନ ମନ ପ୍ରାଣ ନେଇ ହେଲା ଆନ୍ଦୋଳନ
ଧନ୍ୟ ଯଦୁମଣି ଧନ୍ୟ ଦେଶ ହୋଇଲା ସ୍ୱାଧୀନ । ୫ ।

ସ୍ୱତନ୍ତ୍ର ଉତ୍କଳ ରାଜ୍ୟଗଠନରେ ତୁମ୍ଭ କାର୍ଯ୍ୟ
ସର୍ବଜନ ପ୍ରଶଂସିତ ଗାଏ ତବ ଗୁଣ ଗାନ । ୬ ।

ଆଜି ଉତ୍କଳ ଜନନୀ କାନ୍ଦୁଛି ଗୁଣ ବାହୁନି
ଜନ୍ମ ହୋଇବକି ଆଉ କେବେ ଏପରି ସନ୍ତାନ । ୭ ।

ଏକ ଶତ ନଅତମ ଜୟନ୍ତୀରେ ତୁମ୍ଭ ନାମ
ଧନ୍ୟ ହେ ! ପୁରୁଷୋତ୍ତମ କରୁଥିବୁ ଗୁଣଗାନ । ୮ ।

